


ଲିନୋ ଖୋଦାଇ **ହରିଜନ ବାଳିକା** ଶ୍ରୀ ଦୁର୍ଗାପ୍ରସାଦ ପଟ୍ଟନାୟକ

ନଗର ପୋଛୁ ତୋ ଦୁଆର ଓଳାଇ ସେବୁଛୁ ତୋତେ ଯେ ନିତି,
ନର ମୂର୍ତ୍ତି ହିନ୍ଦୁ ! ତାକୁଇ କହୁ ତୁ ଦୃଶ୍ୟ, ଅଛୁବ ଜାତି ।

# ସୂଚୀ


| ବିଷୟ | ଲେଖକ | ପୃଷ୍ଠା |
|---|---|---|
| ୧ । ଆଜ ର ଅସିଦ୍ଧ ଦର୍ଶନ | ଶ୍ରୀ ଧନେଶ୍ୱର ନାୟକ | ୧ |
| ୨ । ପରମାଣୁ, ଏହାର ଅବସ୍ଥାନ୍ତର ଓ ପରମାଣୁବୋମା | ଶ୍ରୀ ବସନ୍ତକୁମାର ଦାଶ ବି. ଏସ୍‌ସି | ୨ |
| ୩ । ଛଉନାଚ | ଶ୍ରୀ ଦେବେନ୍ଦ୍ରନାଥ ପଟ୍ଟନାୟକ | ୩ |
| ୪ । ପ୍ରାର୍ଥନା (ପଦ୍ୟ) | ଅଧ୍ୟାପକ ଶ୍ରୀ ଜାନକୀ ମହାନ୍ତି ଏମ୍. ଏ. | ୫ |
| ୫ । ବିମାନର ଉଡ଼ିବା ପ୍ରଣାଳୀ (Jet Comet) | ଶ୍ରୀ ଅଚ୍ୟୁତକୁମାର ଦାସ | ୬ |
| ୬ । ଦେଲ୍‌ବାରଙ୍କ କେମେଷ୍ଟ୍ରି | ଶ୍ରୀ ବିପିନ ବିହାରୀ ମହାନ୍ତି | ୯ |
| ୭ । ରେଶମ | ଅଧ୍ୟାପକ ଡଃ ଶ୍ରୀ ବସନ୍ତକୁମାର ବେହୁରା | ୧୦ |
| ୮ । ଚିଲିକାର ସ୍ୱାସ୍ଥ୍ୟକର ସ୍ଥାନ | ଡାକ୍ତର ଶ୍ରୀ ରାଧାଚରଣ ପଣ୍ଡା | ୧୨ |
| ୯ । ଦେହରେ ପେନିସିଲିନ୍‌ର କ୍ରିୟା | | ୧୫ |
| ୧୦ । ଆମେରିକାର କୃଷକ | | ୧୬ |
| ୧୧ । ଚିକିତ୍ସା ମାହାତ୍ମ୍ୟ (ବ୍ୟଙ୍ଗ ଗଳ୍ପ) | | ୧୮ |
| ୧୨ । ସ୍ନେହ ଓ ଶାସନ (ପଦ୍ୟ) | ଶ୍ରୀ ବିଭୂତିଭୂଷଣ ପଟ୍ଟନାୟକ | ୨୩ |
| ୧୩ । ଆଶାୟୀ (ପଦ୍ୟ) | ଶ୍ରୀ ମହେଶ୍ୱର ପଣ୍ଡା | ୨୩ |
| ୧୪ । ସ୍ୱାମୀ ଶିବାନନ୍ଦ ସରସ୍ୱତୀ | ସ୍ୱାମୀ ରାମପ୍ରେମୀ | ୨୪ |
| ୧୫ । ନେହେରୁ ଓ ଜିନ୍ନା | ଶ୍ରୀ ବିଭୂତିଭୂଷଣ ମହାନ୍ତି ଏମ୍. ଏସ୍‌ସି | ୨୬ |




## 'ସଂସାର'ର ନିୟମାବଳୀ

୧ । ଏହା ପ୍ରତି ଇଂରାଜୀ ମାସ ୩ ତାରିଖରେ ପ୍ରକାଶିତ ହେବ ।

୨ । ଚିଠିପତ୍ର ବା ଟଙ୍କା ପଠାଇଲାବେଳେ ଦୟାକରି ଗ୍ରାହକ ନମ୍ବର ଉଲ୍ଲେଖ କରିବେ ।

୩ । ପତ୍ରିକାପାଇଁ **ଲେଖା** ପଠାଇବାବେଳେ ମନେ ରଖିବେ ଆମେ ସଂକ୍ଷିପ୍ତ ତଥ୍ୟମୂଳକ ଲେଖା, ହାସ୍ୟରସାତ୍ମକ ଗଳ୍ପ ଓ ପଦ୍ୟକୁ ବେଶୀ ପସନ୍ଦ କରୁ । ଅପ୍ରକାଶିତ ଲେଖା ଫେରାଇ ଦିଆଯାଏ ନାହିଁ ।

୪ । ବିଜ୍ଞାପନ ଓ ଏଜେନ୍‌ସି ପାଇଁ ପରିଚାଳକଙ୍କୁ ଲେଖନ୍ତୁ ।

୫ । ବାର୍ଷିକ ମୂଲ୍ୟ ଅଗ୍ରୀମ ଦେୟ, ନମୁନା କପି ପାଇଁ ଚାରିଅଣାର ଡାକଟିକଟ ପଠାଇବେ ।

୬ । ପତ୍ରିକା ଭି: ପି:ରେ ପଠାଇବାକୁ ଅନୁରୋଧ କରିବେ ନାହିଁ ।

୭ । ଯାବତୀୟ ଚିଠିପତ୍ର ଓ ଟଙ୍କା କେବଳ "ସଂସାର, ତେଲେଙ୍ଗାବଜାର, କଟକ-୧" ଠିକଣାରେ ପଠାଇବେ ।

ପରିଚାଳନା ସମ୍ପାଦକ — **ଶ୍ରୀ ଭଗବାନ ଷଡ଼ଙ୍ଗୀ**

ସଂସାର

ଅକ୍ଟୋବର, ୧୯୫୪
୪ର୍ଥ ବର୍ଷ, ୬ଷ୍ଠ ସଂଖ୍ୟା





# ଆଜ ବି ଆସିଛି ଦଶରା

ଶ୍ରୀ ଧନେଶ୍ୱର ନାୟକ

ଝିପିର୍ ଝିପିର୍ ମେଘ ଝପ ଝପ
ଅସରା ଅସରା ଆସିଲା,
ଗାଆଁ ଦାଣ୍ଡ ବାଟ ପଚର ପଚର
କାଦୁଅରେ ଗୋଡ଼ ଖସିଲା ।

ଚାଲ୍ ବଉଦର ଉହାଡ଼େ ସୂର୍ଯ୍ୟ-
କିରଣ ଗଲାଣି ମଉଳି,
କୂଅ ମୂଳ ଗୃହପାଖେ ଲାଗିଲାଣି
ସବୁଜ ଚିକ୍କଣ ଶିଉଳି ।

ବିଦେଶେ ଯାହାର ପୁଅ ଅଛି ତାର
ମାଆ ବସିଥାଏ ଅନେଇ,
ଆଜ ପର୍ବଦିନେ ପୁଅ ନାହିଁ ଘରେ
ପିଠା ଲାଗେ ଓଷା ପୁନେଇଁ ।

ଦେବୀ ଦରଶନେ ଚାଲିଲେ ଯାତ୍ରୀ
ପିନ୍ଧି ନାନା ରଙ୍ଗ ପୋଷାକ,
ଆହା କି ସୁନ୍ଦର ଯାତରା ପରବ
କେଡ଼େ ଶୋଭା ଏଇ ମାସକ ।

ଘରେ ଘରେ ଆଜ ପିଠା ଖିରି, ପୁରି
ଆନନ୍ଦେ ବିଭୋର ପରବେ,
ନୂଆ ଲୁଗା ପାଇଁ କା' ଝିଅ ରୁଷଇ
ମୁହଁ ଫୁଲାଇ ଏ ପରବେ ।

ବରଷକ ପରେ ଆସିଛି ଆଜ ବି
ପବିତ୍ର ସେଇ ଦଶରା,
ଚପଳା ଧରଣୀ ବୁକୁରେ ସଜାଇ
ସବୁଜ ସୁନ୍ଦର ପସରା ।



# ପରମାଣୁ, ଏହାର ଅବସ୍ଥାନ୍ତର ଓ ପରମାଣୁ ବୋମା

## (Atom, Isotope and Atom bomb)

ଶ୍ରୀ ବସନ୍ତ କୁମାର ଦାସ, ବି. ଏସ୍‌ସି

ପ୍ରତ୍ୟେକ ପଦାର୍ଥକୁ ବିଶ୍ଳେଷଣ କରି ଦେଖିଲେ ଜଣାଯିବ ଯେ ଏହା କେତେକ 'ଅଣୁ'ର ସମଷ୍ଟି । ଅଣୁ ବା Molecule କୁ ପୂର୍ବେ ପଦାର୍ଥର ସୂକ୍ଷ୍ମତମ ଉପାଦାନ ବୋଲି କୁହା ଯାଉଥିଲା । ଏ ଧାରଣା କ୍ରମେ ଭୁଲ୍ ବୋଲି ପ୍ରମାଣିତ ହେଲା ଏବଂ ଅଣୁ କେତେକ ପରମାଣୁ ବା atom ଦ୍ୱାରା ଗଠିତ ବୋଲି ପରବର୍ତ୍ତୀ କାଳରେ ଜଣା ପଡ଼ିଲା । ଗ୍ରୀକ୍ ଭାଷାରେ ଏଟୋମ୍ ଶବ୍ଦର ଅର୍ଥ 'ଅବିଭାଜ୍ୟ' । ଏପରି ନାମର ତାତ୍ପର୍ଯ୍ୟ ଏହି ଯେ ସେତେବେଳେ ବୈଜ୍ଞାନିକମାନଙ୍କର ଦୃଢ଼ ଧାରଣା ଥିଲା ଯେ ପରମାଣୁ ଜଗତର କ୍ଷୁଦ୍ରାଦପି କ୍ଷୁଦ୍ର ଉପାଦାନ । ପରମାଣୁଠାରୁ କ୍ଷୁଦ୍ର ବା ପରମାଣୁର ପୁଣି ଯେ କୌଣସି ଉପାଦାନ ଥାଇପାରେ ଏହା କେହି କେବେ କଳ୍ପନା ମଧ୍ୟ କରି ନ ଥିଲେ । ମନୁଷ୍ୟର ଜ୍ଞାନ ପିପାସା କୌଣସିଥିରେ ପରିତୃପ୍ତ ନୁହେଁ । ଗବେଷଣା ପରେ ଗବେଷଣା ଚାଲିଲା । ପୁରାତନ ପରାସ୍ତ ହୋଇ ନୂତନର ଆବିର୍ଭାବ ହେଲା । 'ପରମାଣୁ'ର ନାମକରଣ ଭୁଲ ବୋଲି ପ୍ରମାଣିତ ହେଲା । କ୍ଷୁଦ୍ର ପରମାଣୁର ଗଠନ ପ୍ରଣାଳୀ ଜଣା ପଡ଼ିଲା ଓ ଏହାର ଅନେକ ଉପାଦାନର ବିସ୍ତୃତ ବିବରଣ ପ୍ରକାଶିତ ହେଲା ।

ପରମାଣୁ ଆଜି ଏକ ଜଟିଳ ସମସ୍ୟା । ସମାଜ, ଅର୍ଥନୀତି, ଯୁଦ୍ଧ ବିଗ୍ରହ ପ୍ରତ୍ୟେକ କ୍ଷେତ୍ରରେ ପରମାଣୁର ମହତ୍ତ୍ୱ ଅତି ବେଶୀ । ପରମାଣୁର ଗଠନ ଅତି ବିଚିତ୍ର । ପଦାର୍ଥର ଏହି ସୂକ୍ଷ୍ମତମ ଅଂଶରେ ବିଶ୍ୱନିର୍ମ୍ମାତା ତାଙ୍କର ଯେଉଁ ବିଚିତ୍ର ଶିଳ୍ପ ଚାତୁରୀ ରଖି ଦେଇଛନ୍ତି, ତାହା ଭାବିଲେ ନାସ୍ତିକ ମନରେ ମଧ୍ୟ ନିଶ୍ଚୟ ଭଗବାନ୍ ଭାବର ଉଦୟ ହେବ ।

ପ୍ରତ୍ୟେକ ପରମାଣୁ ଏକ ଏକ ସୌର ଜଗତର ନମୁନା । ଆମର ଜଣା ଶୁଣା ସୌର ଜଗତର ମୂଳ ପିଣ୍ଡ ସୂର୍ଯ୍ୟ ଏବଂ ତାଙ୍କୁ କେନ୍ଦ୍ର କରି ବୃତ୍ତ ସମ କକ୍ଷରେ ଅନିର୍ଦ୍ଦିଷ୍ଟ କାଳ ପାଇଁ ନିର୍ଦ୍ଦିଷ୍ଟ ଗତିରେ ଘୂରୁଛନ୍ତି ଆମର ପୃଥିବୀ ଓ ତା ପରି ଆଉ କେତେକ ଗ୍ରହ । ପରମାଣୁର ମୂଳ ପିଣ୍ଡ ବା ନିଉକ୍ଲିଅସ (Neucleus) ହେଉଛି ପ୍ରୋଟନ୍, ନିଉଟ୍ରନ୍ ଓ ପଜିଟ୍ରନ୍‌ର ଏକ ସମଷ୍ଟି । ଏହାକୁ କେନ୍ଦ୍ର କରି ଅତିଶୟ ଦ୍ରୁତ ଗତିରେ ନିଜ ନିଜ କକ୍ଷରେ ବୁଲୁଥାନ୍ତି କେତେ ଗୁଡ଼ିଏ ଇଲେକ୍‌ଟ୍ରନ୍ । ଗ୍ରହ, ସୂର୍ଯ୍ୟ ଓ ପ୍ରତ୍ୟେକ ଗ୍ରହ ମଧ୍ୟରେ ମହାଶୂନ୍ୟ ଥିଲା ପରି ଇଲେକ୍‌ଟ୍ରନ୍, ନିଉକ୍ଲିଅସ ଓ ପ୍ରତ୍ୟେକ ଇଲେକ୍‌ଟ୍ରନ୍ ମଧ୍ୟରେ ଯଥେଷ୍ଟ ଶୂନ୍ୟସ୍ଥାନ ଥାଏ । ଏହି ପ୍ରୋଟନ୍ ଇଲେକ୍‌ଟ୍ରନ୍, ପଜିଟ୍ରନ୍ ପ୍ରଭୃତି ପ୍ରତ୍ୟେକ ପରମାଣୁରେ ନିର୍ଦ୍ଦିଷ୍ଟ ପରିମାଣରେ ଥାଏ । ଗୁଣ, ପ୍ରକ୍ରିୟା, ଧର୍ମ୍ମ, ପ୍ରତ୍ୟେକ କ୍ଷେତ୍ରରେ ପଦାର୍ଥ ଏହାର ପରମାଣୁ ଦ୍ୱାରା ନିୟନ୍ତ୍ରିତ ।

ଉଦ୍‌ଜାନ ବା ହାଇଡ୍ରୋଜେନ୍ ସବୁଠାରୁ ସରଳ ପରମାଣୁ । ଏହାର ନିଉକ୍ଲିଅସରେ ଗୋଟିଏ ପ୍ରୋଟନ୍ ଓ ତାହାର ଚାରିପାଖରେ ବୁଲୁଥିବା ଗୋଟିଏ ଇଲେକ୍‌ଟ୍ରନ୍ ଅଛି । ପ୍ରୋଟନ୍‌ର ପଜିଟିଭ୍ ଚାର୍ଜ ଇଲେକ୍‌ଟ୍ରନ୍‌ର ଏକ ନେଗେଟିଭ୍ ଚାର୍ଜକୁ ଖଣ୍ଡିତ କରୁଥିବାରୁ ଏହା ବିଦ୍ୟୁତ୍‌ଶୂନ୍ୟ ହୁଏ । ଏହାର ଓଜନ ଏକ ପ୍ରୋଟନ୍‌ର ଓଜନ ହୋଇଥାଏ । ଆଉ ଗୋଟିଏ ପ୍ରକାର ହାଇଡ୍ରୋଜେନ୍ ଅଛି । ଏହାକୁ ଡିଉଟେରିଅମ୍ କୁହାଯାଏ । ଏହାର ଓଜନ ପ୍ରାୟ ହାଇଡ୍ରୋଜେନ୍‌ର ଦୁଇଗୁଣ । ଏହାର ମୂଳ ପିଣ୍ଡରେ ଗୋଟିଏ ପ୍ରୋଟନ୍ ସହିତ ଗୋଟିଏ ନିଉଟ୍ରନ୍ ଅଧିକ ଥାଏ । ଫଳରେ ନିଉଟ୍ରନ୍‌ର ଓଜନ ଯୋଗୁଁ ପରମାଣୁର ଓଜନ ବଢ଼ିଯାଏ । ହାଇଡ୍ରୋଜେନ୍ ପରମାଣୁରେ ସମୟ ସମୟରେ ଦୁଇଟି ନିଉଟ୍ରନ୍ ମଧ୍ୟ ଅବସ୍ଥାନ କରିପାରେ । ଫଳରେ ଏହାର ଓଜନ

ହାଇଡ୍ରୋଜେନ୍ ର ତିନିଗୁଣ ହୁଏ । ଏହାକୁ ଟ୍ରାଇଟିଅମ୍ କୁହାଯାଏ । ପ୍ରୋଟନ୍ ର ଅବସ୍ଥାନ ଓ ଏହାର ସଂଖ୍ୟାର ଅସମାନତା ଅନୁସାରେ ପରମାଣୁର ଏହିପରି ଯେଉଁ ବିଭିନ୍ନ ଅବସ୍ଥାନ୍ତର ଦେଖାଯାଏ, ସେ ସବୁକୁ 'ଆଇସୋଟୋପ୍' କୁହାଯାଏ । କେତେକ ପରମାଣୁର ଅନେକ ଗୁଡ଼ିଏ ଆଇସୋଟୋପ୍ ଥାଇ ପାରେ ଯଥା ହାଇଡ୍ରୋଜେନ୍ ର ୨, ଟିଣର ୯ ଓ ଇଉରେନିଅମର ୩ ।

ଏଥି ପୂର୍ବରୁ 'ସଂସାର'ରେ ରେଡିଓ ଆଇସୋଟୋପ୍ ନାମକ ପ୍ରବନ୍ଧରେ ଆଇସୋଟୋପ୍ ସମ୍ବନ୍ଧରେ ଆଲୋଚନା କରାଯାଇଥିଲା । ପରମାଣୁ ବୋମାର ପ୍ରଧାନ ତତ୍ତ୍ୱ ଯେ ଏହି ଆଇସୋଟୋପ୍ ଉପରେ ପର୍ଯ୍ୟବସିତ, ଅନେକ ବିଜ୍ଞାନ ଛାତ୍ରଙ୍କର ମଧ୍ୟ ଏ ଧାରଣା ନାହିଁ ।

ହିରୋସିମାରେ ଯେଉଁ ପରମାଣୁ ବୋମା ନିକ୍ଷେପ କରାଯାଇଥିଲା ତାହା ଇଉରେନିଅମ୍ ରେ ତିଆରି ଏବଂ ନାଗାସାକି ସହରକୁ ଯେଉଁ ପରମାଣୁ ବୋମା ଧ୍ୱଂସ କରିଥିଲା, ତାହା ପ୍ଲୁଟୋନିଅମ୍ ରେ ତିଆରି ।

ସାଧାରଣତଃ **U-235**ରୁ ଆଣବିକ ବୋମା ତିଆରି କରାଯାଏ । 235 ଅର୍ଥ ପ୍ରୋଟନ ଓ ନିଉଟ୍ରନର ସମଷ୍ଟି (ପ୍ରୋଟନ୍ ୯୨ ଓ ନିଉଟ୍ରନ ୧୪୩ ) ।

ନିଉଟ୍ରନ୍ ନିଉକ୍ଲିଅସ୍ ସହିତ ଅତିଶୟ ଶକ୍ତ ଭାବରେ ଜଡ଼ିତ ହୋଇ ନ ଥିବାରୁ ବହିଃଶକ୍ତି ପାଇଲେ ଏହା ନିଉକ୍ଲିଅସ୍ ରୁ ଛିଟିକି ପଡ଼େ । ଆଣବିକ ବୋମାରେ ଏହି ଉପାୟ ପ୍ରୟୋଗ କରାଯାଇଥାଏ । ଇଉରେନିଅମ୍ ବୋମାରେ **U-235**ରୁ ନିଉଟ୍ରନ୍ କୁ ଅଲଗା କରିବା ଲାଗି ଅନ୍ୟ ନିଉଟ୍ରନ୍ ପ୍ରୟୋଗ କରାଯାଏ । ବାହାରର ନିଉଟ୍ରନ୍ **U-235**ର ନିଉକ୍ଲିଅସରେ ଆଘାତ ଦେବାମାତ୍ରେ ତାହାର କେତେକ ନିଉଟ୍ରନ୍ ବନ୍ଧନ ମୁକ୍ତ ହୋଇ ଯାନ୍ତି । ଏହି ବନ୍ଧନମୁକ୍ତ ନିଉଟ୍ରନ୍ ନିଉକ୍ଲିଅସରୁ ଏତେ ଜୋରରେ ବାହାରି ଆସେ ଯେ ଏହାର ପଥରେ ଥିବା ସମସ୍ତ ପରମାଣୁର ନିଉକ୍ଲିଅସକୁ ଏହା ବିକ୍ଷତ କରି ପକାଏ । ଫଳରେ ଏହିସବୁ ପରମାଣୁର ମଧ୍ୟ ନିଉଟ୍ରନ୍ ବନ୍ଧନମୁକ୍ତ ହୋଇ ବାହାରିଯାଏ । ଏହି ସବୁ ନିଉଟ୍ରନ୍ ପୁଣି ଅନ୍ୟ ନିଉକ୍ଲିଅସକୁ ବିଦ୍ଧ କରି ଅନ୍ୟ ନିଉଟ୍ରନକୁ ବନ୍ଧନମୁକ୍ତ କରନ୍ତି । ଫଳରେ ଏହି ପ୍ରକ୍ରିୟା କ୍ରମାଗତ ସ୍ୱତଃଶୃଙ୍ଖଳିତ ହୋଇ ପଡ଼େ । ଏହି ପ୍ରକ୍ରିୟା ଦ୍ୱାରା **U-235** ବୋମା ମଧ୍ୟସ୍ଥ ଅସଂଖ୍ୟ ପରମାଣୁରେ ଥିବା ଲୀନ ଶକ୍ତି ପ୍ରକାଶିତ ହୁଏ । କ୍ଷତ ବିକ୍ଷତ ପରମାଣୁର ଅଂଶ ସବୁ କଳ୍ପନାତୀତ ଦ୍ରୁତ ଗତିରେ ଚତୁର୍ଦ୍ଦିଗକୁ ବିକ୍ଷିପ୍ତ ହୁଏ । ଏହି ପ୍ରକ୍ରିୟାରେ ପ୍ରାୟ ୨୦ କୋଟି ଇଲେକ୍ଟ୍ରନ୍ ଭୋଲ୍ଟ ଶକ୍ତି ଉତ୍ପନ୍ନ ହୁଏ । ଗୋଟିଏ ବଡ଼ ସହରକୁ ଜାଳିପୋଡ଼ି ଧ୍ୱଂସ କରିଦେବା ପାଇଁ ଏହି ଶକ୍ତି ଯଥେଷ୍ଟ ।

ଆଜିକାଲି ଆଣବିକ ବିସ୍ଫୋରଣ ଅତି ସାଧାରଣ କଥାରେ ପରିଣତ ହେଲାଣି କିନ୍ତୁ ଏହାର ଗୁପ୍ତ ରହସ୍ୟ ଅତି ଅଳ୍ପ ବୈଜ୍ଞାନିକଙ୍କୁ ଜଣା ।

---

# "ଛଉନାଚ"

ଶ୍ରୀ ଦେବେନ୍ଦ୍ର ନାଥ ପଟ୍ଟନାୟକ

ଭାରତୀୟ ନୃତ୍ୟକଳା ମଧ୍ୟରେ "ଛଉନାଚ" ଅନ୍ୟତମ । ଏହାର ସୁଖ୍ୟାତି କେବଳ ଭାରତରେ ନୁହେଁ, ସୁଦୂର ଇଉରୋପରେ ମଧ୍ୟ ଅତି ପ୍ରଶଂସିତ ।

'ଛଉ' ଅର୍ଥ ମୁଖା । ମୁଖା ପିନ୍ଧି ନୃତ୍ୟ କରୁଥିବାରୁ ଏ ନୃତ୍ୟର ନାମ 'ଛଉନାଚ' । ମୟୂରଭଞ୍ଜ ଓ ଷଢେଇକଲା ବ୍ୟତୀତ ନୀଳଗିରି, ବଣାଇ, ଖରସୁଆଁ ପ୍ରଭୃତି ରାଜ୍ୟମାନଙ୍କରେ ରାଜାମହାରାଜାମାନଙ୍କର ପୃଷ୍ଠପୋଷକତାରେ ଖିଜବାଟୀରେ ପ୍ରତିବର୍ଷ ଚୈତ୍ରପୂର୍ଣ୍ଣିମୀ ପର୍ଯ୍ୟନ୍ତ ୩ ବା ୭ ରାତି ଏ ନୃତ୍ୟ ପ୍ରଦର୍ଶିତ ହୁଏ । ଉକ୍ତ ଗଡ଼ଜାତଗୁଡ଼ିକର ମିଶ୍ରଣପରେ ଏବେ ସେ ଜାକଜମକ ଓ ଉତ୍ସାହ କମିଯାଇଛି । ସୁଖର ବିଷୟ ଓଡ଼ିଶା ସରକାର ଏହି ଜାତୀୟ ଅନୁଷ୍ଠାନକୁ ଜୀବିତ ଓ ଉନ୍ନତ କରି ରଖିବା ଦିଗରେ ବ୍ରତୀ ଅଛନ୍ତି । ଉକ୍ତ ରାଜ୍ୟଗୁଡ଼ିକ ମଧ୍ୟରେ ମୟୂରଭଞ୍ଜ ଓ ଷଢେଇକଲାରେ ଏହା ଅଧିକ ଆଦୃତ ଏବଂ ଗ୍ରାମର ପର୍ବ-

ପର୍ବାଣୀ, ବିବାହ ବା ଅନ୍ୟ ଉତ୍ସବରେ ଏ ନୃତ୍ୟ ଦେଖିବାକୁ ମିଳେ ।

'ଛଉ ନାଚ'ର ଜନ୍ମ କେବେ ତାହା ସଠିକ କହିବା ସହଜ ନୁହେଁ । ଚୈତ୍ର ପୂର୍ଣ୍ଣିମୀରେ ରାଜାମହାରାଜା ମାନଙ୍କ ପୃଷ୍ଠପୋଷକତାରେ 'ଛଉନାଚ' ଉପଲକ୍ଷେ ଯେଉଁ 'ଚୈତ୍ରପର୍ବ' ହୁଏ, ତହିଁର ପ୍ରଥମରେ ନୃତ୍ୟଶିଳ୍ପୀମାନେ ନୃତ୍ୟର ଆଦିଦେବତା ଶିବଙ୍କୁ ପୂଜାକରନ୍ତି । ମଣିଷ ଯେଉଁଠାରେ ଭାଷା ଖୋଜି ପାଏନି, ସେହିଠାରେ ସେ ହୃଦୟର ସମସ୍ତ ପରିଚୟ ଦିଏ ନୃତ୍ୟରେ । ଏଇଥିପାଇଁ ଭାଷା ଅପେକ୍ଷା ନୃତ୍ୟ ଓ ଗୀତ ମଣିଷକୁ ବେଶୀ ଅଭିଭୂତ କରିଏ । ମୋର ଯେତେଦୂର ଅନୁମାନ 'ଛଉନାଚ'ର ଜନ୍ମ କଳିଙ୍ଗ ସାମ୍ରାଜ୍ୟର ସୁଖ୍ୟାତି ସମୟରୁ । ଛଉନାଚ ସିଂହଭୂମି, ମୟୂରଭଞ୍ଜ, ବାଲେଶ୍ବର ଓ ମେଦିନୀପୁର ଅଞ୍ଚଳ ନେଇ ସୁପରିଚିତ । ଏଥିରୁ ଅନୁମାନ ହୁଏ 'ଛଉନାଚ'ର ଜନ୍ମ ସିଂହଭୂମିରେ । ଯେତେବେଳେ କଳିଙ୍ଗ ସାମ୍ରାଜ୍ୟ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା, ସେ ସମୟରେ ଓଡ଼ିଶାର ବ୍ୟବସାୟୀମାନେ ବାଲେଶ୍ବର, ମେଦିନୀପୁର ଓ ଅନ୍ୟାନ୍ୟ ସମୁଦ୍ର ଉପକୂଳସ୍ଥ ବନ୍ଦରବାଟେ ଯାଇ, ବାଲି ପ୍ରଭୃତି ଦ୍ବୀପମାନଙ୍କୁ ବାଣିଜ୍ୟ କରିବାକୁ ଯାଉଥିଲେ । ତାହାର ପ୍ରମାଣ ସେଠାକାର କଳା ଓ କାରୁକାର୍ଯ୍ୟ ଆଜିପର୍ଯ୍ୟନ୍ତ ଓଡ଼ିଆଙ୍କର ସଂସ୍କୃତିର ପରିଚୟ ଦିଏ । ଉକ୍ତ ଦ୍ବୀପମାନଙ୍କରେ ଏବେ ବି ମୁଖା ପିନ୍ଧି ନୃତ୍ୟକରିବାର ଦେଖାଯାଏ । ଏଥିରୁ ଅନୁମାନ ହୁଏ ଏହା 'ଛଉନାଚ'ର ପ୍ରଭାବ । ହୁଏତ ଆଜି ସେଠାକାର ଲୋକଙ୍କର ରୁଚି ନେଇ ନୃତ୍ୟର ରୂପ ଅନ୍ୟପ୍ରକାର ହୋଇ ପାରିଥାଏ, କିନ୍ତୁ ଏହା ଯେ 'ଛଉନାଚ'ର ଅନ୍ୟ ରୂପ ନୁହେଁ ଏହା ପ୍ରମାଣ କରିବା କଷ୍ଟକର ।

'ଛଉନାଚ' ପ୍ରଥମେ କେବଳ ବୀରରସାତ୍ମକ ଥିଲା । ୧୯୧୧ ଖ୍ରୀଷ୍ଟାବ୍ଦ ଦିଲ୍ଲୀଦରବାରରେ ମୟୂରଭଞ୍ଜର ସ୍ବନାମଧନ୍ୟ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ପ୍ରଥମେ ଓଡ଼ିଆର ଏହି ନୃତ୍ୟକଳା ଉପସ୍ଥିତ ଭାରତୀୟ ଓ ବହୁ ବିଦେଶାଗତ ବିଶିଷ୍ଟବ୍ୟକ୍ତିଙ୍କୁ ଦେଖାଇ ମୁଗ୍ଧ କରିଥିଲେ । ସେତେବେଳ ପର୍ଯ୍ୟନ୍ତ ବୀରରସାତ୍ମକ ଯୋଗୁଁ ଏହା '**War dance**' ବା 'ଯୁଦ୍ଧ ନାଚ' ରୂପେ ପରିଚିତ ଥିଲା । ପୁରାଣ ମହାଭାରତ ପ୍ରଭୃତିର ଏହି ରସର ନାନାଅଂଶ ଏ ନୃତ୍ୟକଳାରେ ପ୍ରଦର୍ଶିତ ହେଉଥିଲା । କ୍ରମେ ନୃତ୍ୟଶିଳ୍ପୀ, ଦର୍ଶକଙ୍କର ରୁଚି ବଦଳି ଏ ନୃତ୍ୟ ନାନାରସରେ ପ୍ରଭାବିତ ହେଲା ଓ ହେଉଛି ।

ମୟୂରଭଞ୍ଜ ଓ ସରାଇକେଲାରେ 'ଛଉନାଚ'ର ଆଦର ଓ ସାଧନା ଅନ୍ୟ ଅଞ୍ଚଳ ଅପେକ୍ଷା ବେଶି । ମୟୂରଭଞ୍ଜର ମହାରାଜା ଏ ନାଚ ରାଜ୍ୟବାହାରକୁ ନେଇ ପ୍ରଦର୍ଶନ କରାଇବାର ମତ ବିରୁଦ୍ଧରେ ଥିଲେ । ହୁଏତ ସେ ଚାହିଁଥିଲେ ଯେ ରାଜ୍ୟବାହାରର ଲୋକେ ତାଙ୍କ ରାଜ୍ୟକୁ ଏହି ନୃତ୍ୟ ଦେଖିବା ପାଇଁ ଆସିବାରେ ତାଙ୍କ ରାଜ୍ୟର ଏହି ବିଶିଷ୍ଟ ନୃତ୍ୟକଳାର ବୈଶିଷ୍ଟ୍ୟ ଅଧିକ ଲୋଭନୀୟ ଓ ସମ୍ମାନସୂଚକ ହେବ । ମୟୂରଭଞ୍ଜର ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣପରେ ଏ ବାଧାର ପ୍ରଶ୍ନ ଉଠୁନାହିଁ ଏବଂ ମୟୂରଭଞ୍ଜର ନୃତ୍ୟଶିଳ୍ପୀମାନେ ଦିଲ୍ଲୀ, କଟକ, ପୁରୀ, ଭୁବନେଶ୍ବର ପ୍ରଭୃତି ସ୍ଥାନମାନଙ୍କରେ ବିଶେଷ ଅନୁଷ୍ଠାନରେ ନୃତ୍ୟ ପ୍ରଦର୍ଶନ କରୁଛନ୍ତି । ସରାଇକେଲା ମହାରାଜା ଓ ତାଙ୍କ ଭାଇ ୮ ବିଜୟ ପ୍ରତାପସିଂହ ଦେଓ ଓଡ଼ିଆର ଏହି ପ୍ରଖ୍ୟାତ ନୃତ୍ୟକଳାକୁ ଦେଶ ବିଦେଶରେ ପ୍ରଦର୍ଶନ କରାଇ ଓଡ଼ିଆ ଶିଳ୍ପୀଙ୍କ ଗୌରବ ଅକ୍ଷୁର୍ଣ୍ଣ ରଖିଛନ୍ତି । ପ୍ରଥମେ ସରାଇକେଲା ଶିଳ୍ପୀମାନେ ଭାରତ ଭ୍ରମଣ କରି ଇଉରୋପରେ ନାନା ସ୍ଥାନ ବୁଲି ଉଚ୍ଚ ପ୍ରଶଂସା ଲାଭ କରିଛନ୍ତି । ମହାତ୍ମା ଗାନ୍ଧୀ ଓ କବିଗୁରୁ ରବୀନ୍ଦ୍ରନାଥ ପ୍ରଭୃତି "ଛଉନାଚ" ଦେଖି ବିଶେଷ ଆନନ୍ଦିତ ହୋଇ ଉଚ୍ଚ ପ୍ରଶଂସା କରିଥିଲେ । ଭାରତର ଅନ୍ୟତମ ନୃତ୍ୟଶିଳ୍ପୀ ଉଦୟଶଙ୍କର ଏ ନୃତ୍ୟରେ ମୁଗ୍ଧ ହୋଇଥିଲେ ।

ମୟୂରଭଞ୍ଜର ନୃତ୍ୟଶିଳ୍ପୀମାନେ ରୁଚି ବଦଳାଇ ଛଉ ବା ମୁଖା ନ ପିନ୍ଧି ନାଚୁଛନ୍ତି । ମାତ୍ର ସରାଇକେଲା ଶିଳ୍ପୀମାନେ ଏବେ ବି ମୁଖା ପିନ୍ଧି ନାଚନ୍ତି । ସାଧାରଣତଃ ମୁଖା ପିନ୍ଧି ନାଚିବା କଷ୍ଟସାଧ୍ୟ ଓ କୌଣସି ନାଚ ୧୦।୧୧ ମିନିଟରୁ ବେଶି ନାଚିବା କଷ୍ଟକର । ଏହା ବ୍ୟତୀତ ମୁଖର ଭାବ ଅଭିବ୍ୟକ୍ତି ପାଇଁ ମୁଖା

ଅନେକାଂଶରେ ପ୍ରତିବନ୍ଧକ ହୁଏ । ହୁଏତ ଏହି ସବୁ ଦୃଷ୍ଟିରୁ ମୟୂରଭଞ୍ଜର ଶିଳ୍ପୀମାନେ ମୁଖା ଲଗାଉ ନାହାନ୍ତି, ମାତ୍ର ସରେଇକଳାର ଶିଳ୍ପୀମାନେ ନିଜର ମୌଳିକତା ବଜାଏ ରଖିଛନ୍ତି । ସରେଇକଳାର ଶିଳ୍ପୀ-ମାନେ ଯେଉଁ ମୁଖା ଲଗାନ୍ତି, ତାହା ବିଶେଷ ଉନ୍ନତ ଧରଣର ବୋଲି ନୃତ୍ୟ ଶିଳ୍ପୀ ଉଦୟଶଙ୍କର ସ୍ୱୀକାର କରିଛନ୍ତି । ଏଥି ନିମନ୍ତେ ମୁଖା-ଶିଳ୍ପୀ ମହାପାତ୍ର ବଂଶ ପ୍ରଶଂସାଭାଜନ । ଉକ୍ତ ଦୁଇ ରାଜ୍ୟର ନୃତ୍ୟ ମଧ୍ୟରେ ସରେଇକଳାର ନୃତ୍ୟ ଅଧିକ ମୌଳିକ । ମୟୂରଭଞ୍ଜର ନୃତ୍ୟରେ ଦେଶୀୟ ବାଦ୍ୟସହ ବିଦେଶୀୟ ବେଣ୍ଡ-ବାଦ୍ୟ ଓ ନୃତ୍ୟର ସୁର୍ ଅନେକ ସ୍ଥଳରେ ହିନ୍ଦି ଓ ବଙ୍ଗଳାରୁ ସଂଯୋଗ କରାଯାଇଥାଏ । ମାତ୍ର ସରେଇକଳା ନୃତ୍ୟରେ ସେ ସବୁ ନଥାଇ ମଧ୍ୟ ଅଧିକ ହୃଦୟଗ୍ରାହୀ ହୁଏ । ମୟୂରଭଞ୍ଜର ରାଜପରିବାର ଛଉନାଚ ପ୍ରତି ବିଶେଷ ଅଗ୍ରହାନ୍ୱିତ ଥିଲେ ମଧ୍ୟ ରାଜପରିବାରର କେହି ସାଧାରଣତଃ ଏ ନୃତ୍ୟରେ ଅଂଶ ଗ୍ରହଣ କରନ୍ତି ନାହିଁ । ମାତ୍ର ସରେଇକଳାର ରାଜପରିବାର ସମସ୍ତ ସାହାଯ୍ୟ ଓ ଉତ୍ସାହ ଦେବା ସଙ୍ଗେ ସଙ୍ଗେ ସର୍ବସାଧାରଣ ଶିଳ୍ପୀଙ୍କ ସହିତ ମିଳି ନୃତ୍ୟରେ ବିଶିଷ୍ଟ ଅଂଶ ଗ୍ରହଣ କରିବାରେ ଜନସାଧାରଣ ଓ ଶିଳ୍ପୀମାନେ ଅଧିକ ଉତ୍ସାହିତ ହେବା ସ୍ୱାଭାବିକ । ସରେଇକଳା ମହାରାଜାଙ୍କର ସ୍ୱନାମଧନ୍ୟ ପୁତ୍ର ୰ ଶୋଭେନ୍ଦ୍ର ସରେଇକଳାର ନୃତ୍ୟ-ଶିଳ୍ପୀଙ୍କ ଅଗ୍ରଣୀ ହୋଇ ଦେଶ ବିଦେଶରେ ଓଡ଼ିଆର ନୃତ୍ୟକଳା ଦେଖାଇ ଚମତ୍କୃତ କରିଥିଲେ । ଯିଏ ତାଙ୍କର ଚନ୍ଦ୍ରଭାଗା, ମୟୂର, ସାଗର ନୃତ୍ୟ ଦେଖିଛି ସେ ତାଙ୍କୁ ଜୀବନରେ କେବେ ଭୁଲି ପାରିବ ନାହିଁ । ସରେଇକଳାର ଅନ୍ୟ ଦୁଇ ରାଜକୁମାର, ହିରେନ୍ଦ୍ର, ବନବିହାରି, କେଦାର ପ୍ରଭୃତିଙ୍କର ନୃତ୍ୟ ବିଶେଷ ଉନ୍ନତ ଧରଣର ।

ଛଉନାଚକୁ ଅନୁକରଣ କରି ସିନେମାରେ ନୃତ୍ୟ ଦେବା ଆରମ୍ଭ ହେଲଣି । ରାଜାମାନେ ରାଜ୍ୟ ହରାଇବା ପରେ ଶିଳ୍ପୀମାନେ ରାଜାଙ୍କଠାରୁ ପାଉଥିବା ସାହାଯ୍ୟ ହରାଇ ନିରୁତ୍ସାହିତ ହୋଇ ପଡଲେଣି । ଏହି ଜାତୀୟ କଳାକୁ ଉନ୍ନତ କରିବା ନିମନ୍ତେ ମୟୂରଭଞ୍ଜ ଓ ସରେଇକଳା ମହାରାଜା ମିଳିତ-ଭାବେ 'ସରେଇକଳା' ଠାରେ ଯେଉଁ 'ଶ୍ରୀକଳାପୀଠ' ଖୋଲିଥିଲେ ତହିଁର କଳା ଆର୍ଥିକ ଓ ଆନ୍ତରିକତା ଅଭାବରେ ଲୋପ ପାଇବାକୁ ବସିଲଣି ।

---

# ପ୍ରାର୍ଥନା

ଅଧ୍ୟାପକ ଶ୍ରୀ ଜାନକୀ ମହାନ୍ତି ଏମ୍. ଏ.

ଦୃଢ଼ କର ଅନ୍ତର ମୋ'
　　ଅଚଂଚଳ ସର୍ବ ସୁଖ-ଦୁଃଖେ
ଦିଅ ପ୍ରାଣେ ଧୈର୍ଯ୍ୟ, ଶାନ୍ତି
　　ହାସ୍ୟରେଖା ନିରାନନ୍ଦ ମୁଖେ ।
ଦିଅ ରୂପ, ଦିଅ ସ୍ୱାସ୍ଥ୍ୟ
　　ଦିଅ ମୋତେ ଯୌବନ ସୁନ୍ଦର
ଅସୀମ ସାହସ ବକ୍ଷେ
　　ପ୍ରାଣଭୁଲା ଗୋପନ ମନ୍ତ୍ର ।

ଶକ୍ତି ଦିଅ ବାହୁରେ ମୋ
　　କରିବି ମୁଁ ସେବା ଜନତାର —
ଫୁଟାଇବି ମୁଖେ ହସ
　　ପୋଛି ଦେବି ଚକ୍ଷୁ ଲୁହଧାର ।
ଦିଅ ଜ୍ଞାନ ବୁଝିବି ମୁଁ
　　ଏ ସୃଷ୍ଟିର ଗୋପନ ରହସ୍ୟ
ନିଃସ୍ୱ କରି କିବା ଲାଭ
　　ରଖି ମୋତେ ହେ ବିଶ୍ୱ ନମସ୍ୟ ?

---

# ବିମାନର ଉଡିବା ପ୍ରଣାଳୀ (୬) Jet Comet

ଶ୍ରୀ ଅଜୟ କୁମାର ଦାସ

ବୈଜ୍ଞାନିକମାନଙ୍କ ସାଧନାରେ ଆଜି ଜେଟ୍ କମେଟ୍ ( Jet Comet ) ଘଣ୍ଟାକେ ୭୧୫ ମାଇଲ୍ ବେଗରେ ଆକାଶ ମାର୍ଗରେ ଗତି କରି ପୃଥିବୀ ମଧ୍ୟରେ ସର୍ବୋଚ୍ଚ ବେଗର ସୀମା ସ୍ଥାପନ କରିଛି । ଏହି ଜେଟ୍ ଇଂଜିନର ଜନ୍ମଦାତା ଫ୍ରାଙ୍କ ହୁଇଟଲ୍ ବ୍ରିଟେନର ଏକ ବୈଜ୍ଞାନିକ । ତା ପରେ ହୁଏତ ନାନା ଦେଶର ବୈଜ୍ଞାନିକମାନଙ୍କ ପରୀକ୍ଷା ଓ ଗବେଷଣା ପରେ ଆଜି ଜେଟ୍ ଇଂଜିନ ଫ୍ରାଙ୍କ ହୁଇଟଲ୍ଙ୍କ ଇଂଜିନଠାରୁ ଅନେକ ପୃଥକ୍ ହୋଇ ଯାଇଛି ; ତଥାପି ଉଭୟ ଇଂଜିନ୍‌ର ନିୟମ ସମାନ । ଆଗରୁ କହିଛି ପ୍ରତ୍ୟେକ ବିମାନ ଆଗରେ ଏକ ବା ତତୋଽଧିକ ପଙ୍ଖା ଥାଏ, ଏହାକୁ Propeller କହନ୍ତି । ଏହା ବାୟୁମଣ୍ଡଳରୁ ଶକ୍ତି ଗ୍ରହଣ କରିବାର ଏକମାତ୍ର ସହାୟକ । ଜାହାଜର ଆଗରେ ଥିବା ପଙ୍ଖା ଗୁଡ଼ିକ ଅଭ୍ୟନ୍ତରୀଣ ଇଂଜିନ୍ ସହିତ ସଂପୃକ୍ତ । ଇଂଜିନ୍ ଘୁରିବାକୁ ଆରମ୍ଭ କଲେ ପଙ୍ଖା ଘୁରିବାକୁ ଆରମ୍ଭ କରେ ଏବଂ ଆଗ ପଟର ପବନକୁ ଛିନ୍ନ କରିଦିଏ । ଇଂଜିନର ଗତି ବଢ଼ିବା ସଙ୍ଗେ ସଙ୍ଗେ ଏହା ସୃଷ୍ଟି କରେ ଗୋଟିଏ ଛୋଟ ଧରଣର ତୋଫାନ ଏବଂ ସେହି ତୋଫାନ ମଧ୍ୟ ଦେଇ ଜାହାଜଟି ବିମାନଘାଟୀ ମଧ୍ୟରେ ଭୀଷଣ ବେଗରେ ଦୌଡ଼ି ଅବଶେଷରେ ମାଟି ଛାଡ଼ି ଉଠିଯାଏ ଉପରକୁ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଏହି ଦ୍ରୁତଗାମୀ ଜେଟ୍ ବିମାନର ଆଗରେ ସେପରି କୌଣସି ପଙ୍ଖା ନାହିଁ । ତେବେ ଏହି ପଙ୍ଖାଶୂନ୍ୟ ବିମାନ ଉପରକୁ ଉଠେ କିପରି ? ତାହାହେଲେ କଣ ଏହି ବିମାନରେ ଅନ୍ୟାନ୍ୟମାନଙ୍କ ପରି ଇଂଜିନ ନାହିଁ ? ଏହାର ଆକୃତି ତେବେ କିପରି ହୋଇଥିବ, ଅନ୍ୟାନ୍ୟ ବିମାନମାନଙ୍କ ପରି ନା ପୃଥକ୍ ? ଏହି ପ୍ରଶ୍ନ ଗୁଡ଼ିକ ସାଧାରଣତଃ ପାଠକ ପାଠିକାମାନଙ୍କ ମନକୁ ଆସିବା ସ୍ୱାଭାବିକ । ନିମ୍ନରେ ଏହି ପ୍ରଶ୍ନର ଉତ୍ତର ଦେବା ସଙ୍ଗେ ସଙ୍ଗେ ଜେଟ୍ ବିମାନ ସମ୍ବନ୍ଧରେ କିଛି ଆଲୋଚନା କରାଯାଇଛି ।

ଏହାର ଆକୃତିକୁ ସାଧାରଣ ବିମାନମାନଙ୍କ ପରି ସ୍ଥୂଳତଃ ଚାରି ଭାଗରେ ବିଭକ୍ତ କରାଯାଇ ପାରେ ଗଣ୍ଡି (Fuselage), ନାକ (Nose), ପକ୍ଷୀ (Wings), ଲାଞ୍ଜ (Tail) । ଏହି ପତ୍ରିକାରେ ବହୁବାର ଏହାର ଅବସ୍ଥିତି ଓ ଉପଯୋଗିତା ସମ୍ବନ୍ଧରେ ଆଲୋଚନା ହୋଇ ସାରିଛି । ଏଣୁ ପୁନର୍ବାର ଏହାର ଆଲୋଚନା ନ କରି ଅନ୍ୟାନ୍ୟ କେତୋଟି ନୂଆ ବିଷୟରେ ଆଲୋଚନା କରିବା ।

ଜେଟ୍ ବିମାନମାନଙ୍କରେ ଅନ୍ୟାନ୍ୟ ବିମାନମାନଙ୍କ ପରି କେତେ ଗୁଡ଼ିଏ ଇଂଜିନ ଥାଏ । ଏଗୁଡ଼ିକ ଦୁଇପାଖ ପକ୍ଷୀ ଉପରେ ଥାଏ । ଏହା ବିମାନଟିକୁ ଉଡ଼ିବାରେ ସାହାଯ୍ୟ କରେ । ଏହି ଇଂଜିନ୍‌ଗୁଡ଼ିକ ଠିକ୍ ମଟର ଇଞ୍ଜିନ ପରି, ମଟର ଇଂଜିନ ଗୁଡ଼ିକ ଛୋଟ କିନ୍ତୁ ବିମାନର ଇଂଜିନ ଗୁଡ଼ିକ ଆକୃତିରେ ବଡ଼ ଓ ବେଶୀ ଅଶ୍ୱଶକ୍ତି ସମ୍ପନ୍ନ ।

ଏହି ଇଞ୍ଜିନ ଗୁଡ଼ିକ ସାଧାରଣତଃ ପେଟ୍ରୋଲ୍ ଚାଳିତ । ଏହା ବାୟୁମଣ୍ଡଳରୁ ବାୟୁ ଗ୍ରହଣ କରେ ଏବଂ ନିର୍ଦ୍ଦିଷ୍ଟ ପରିମାଣରେ ଏହାକୁ ପେଟ୍ରୋଲ ସହିତ ମିଶାଇ ଗୋଟିଏ ମିଶ୍ରଣ (Solution) ତିଆରି କରେ । ଏ ହେଲା କାରବୁରେଟରର ( Carburetter ) ର କାମ । ତା ପରେ ଏହି ମିଶ୍ରଣ ଯାଇଁ ପହଞ୍ଚେ ସିଲିଣ୍ଡର (Cylinder) ମଧ୍ୟରେ । ଏହାର ଆକୃତି ପମ୍ପପରି ଫମ୍ପା । ଏହା ମଧ୍ୟକୁ ନିର୍ଦ୍ଦିଷ୍ଟ ପରିମାଣରେ ମିଶ୍ରଣ ପ୍ରବେଶ କରିବା ପରେ ତାର ପ୍ରବେଶ ଦ୍ୱାର ବନ୍ଦ ହୋଇଯାଏ ଏବଂ ସିଲିଣ୍ଡର ତଳୁ ଧୀରେ ଧୀରେ ଉଠେ । ପିଷ୍ଟନ୍ (Piston)—ଏହା ଏକ ନିଦା ଗୋଲ ଧାତୁଖଣ୍ଡ । ଏହା ପ୍ରତ୍ୟେକ ମୁହୂର୍ତ୍ତରେ ସିଲିଣ୍ଡର ମଧ୍ୟସ୍ଥ ଦ୍ରବଣକୁ ଉପରକୁ ଚାପେ ଏବଂ ଯେଉଁ ମୁହୂର୍ତ୍ତରେ ଏହାକୁ ସମ୍ପୂର୍ଣ୍ଣ ଚାପି ତଳକୁ ଖସି ଆସିବା ଅବସ୍ଥାରେ ଥାଏ, ଠିକ୍ ସେତିକି ବେଳେ ସିଲିଣ୍ଡର ଉପରେ ଥିବା ପ୍ଲଗ ମାଧ୍ୟମରେ ଇଲେକ୍‌ଟ୍ରିକ ସଂଚାଳିତ ହୁଏ ଏବଂ ଚାପି

ହୋଇ ରହିଥିବା ଦ୍ରବଣକୁ ପୋଡ଼ ପକାଏ । ପୋଡ଼ିଗଲା ପରେ ଏହାର ଆୟତନ ପୂର୍ବଠାରୁ ବହୁଗୁଣରେ ବଢ଼ିଯାଏ ଏବଂ ପିଷ୍ଟନ୍‌କୁ ତଳକୁ ମାଡ଼ିଦିଏ ଏବଂ ଅନ୍ୟ ଗୋଟିଏ ପାଇପ୍ ବାଟେ ପଦାକୁ ବାହାରି ଯାଏ । ଇଂରାଜୀରେ ସେ ପାଇପକୁ **exhaust pipe** କହନ୍ତି । ମଟରର ପଛରୁ ଯେଉଁ ଧୂଆଁ ବାହାରେ ତାହା ସେହି ପୋଡ଼ା ଅଂଶ । ତାର ସମୁଦାୟ କାମ ଶେଷକରି ଧୂଆଁ ଆକାରରେ ମଟରର ପଛ ନଳ ଦ୍ୱାରା ପଦାକୁ ବାହାରି ଯାଉଥାଏ । ପିଷ୍ଟନର ଶେଷଅଂଶ **flywheel** ସହିତ ଲାଗିଥାଏ ଏବଂ ପିଷ୍ଟନ ଗୁଡ଼ିକ ତଳ ଉପର ହେବା ସମୟରେ ପ୍ରୋପେଲରଟି ଘୂରେ ଏବଂ ସମୁଦାୟ ଇଂଜନଟି କାମ କରେ । ଏହି ହେଲା ମଟର ଇଂଜନର କାର୍ଯ୍ୟକରିବା ପ୍ରଣାଳୀ । ଏହି ଇଂଜନମାନଙ୍କ ସହିତ ବିମାନର ପଙ୍ଖା ସଂଯୁକ୍ତ ଥାଏ । ଏଣୁ ଇଂଜନ୍ ଘୂରିବାକୁ ଲାଗିଲେ ପଙ୍ଖା-ଘୂରେ ଏବଂ ଜାହାଜଟି ଉପରକୁ ଉଠେ । ଜେଟ୍ ଇଂଜନ୍ ଗୁଡ଼ିକ ଠିକ୍ ପଦାରୁ ଏହିପରି ପବନ ନିଏ, ନିର୍ଦ୍ଦିଷ୍ଟ ପରିମାଣ ପେଟ୍ରୋଲ ସହିତ ମିଶାଇ ସିଲେଣ୍ଡରକୁ ପଠାଏ, ସେଠାରେ ପିଷ୍ଟନ ସେହି ଦ୍ରବଣକୁ ଚାପେ ଏବଂ ଇଲେକ୍‌ଟ୍ରିକ ସ୍ରୋତ ପ୍ଲଗ୍ ମଧ୍ୟଦେଇ ସେଗୁଡ଼ିକୁ ପୋଡ଼ିଦିଏ ଯାହାଦ୍ୱାରା କି ଦ୍ରବଣର ଆୟତନ ବଢ଼ିଯାଏ ଏବଂ ପିଷ୍ଟନ୍‌କୁ ତଳକୁ ଦାବି ତାହା ବାହାରିଯାଏ ପଦାକୁ ଜାହାଜର ପଛପାଖକୁ ! ଏହା ଏତେ ଜୋରରେ ପଦାକୁ ବାହାରେ ଯେ ଜାହାଜଟି କ୍ରମେ କ୍ରମେ ଆଗକୁ ଦୌଡ଼େ ଏବଂ ବିମାନଘାଟୀ ମଧ୍ୟରେ ଏପରି ଭୀଷଣ ବେଗରେ ଦୌଡ଼ି ଦୌଡ଼ି ତାର ପ୍ରୟୋଜନୀୟ ଶକ୍ତି ସଂଗ୍ରହ କରେ ଏବଂ ଭୂମି ଛାଡ଼ି କ୍ରମେ କ୍ରମେ ଉଠିଯାଏ ଉପରକୁ ।

ଉଦାହରଣ ସ୍ୱରୂପ ଗୋଟିଏ ଛୋଟିଆ କାଠ ଖେଳନା ଗାଡ଼ି ନିଅ । ଗାଡ଼ିର ପଛ ପାଖରେ ଗୋଟିଏ କଣା କରି ଗୋଟିଏ ରବର୍ ବେଲୁନର ମୁହଁ ତାହା ମଧ୍ୟଦେଇ ପଛକୁ ବାହାର କରିଦିଅ । ବର୍ତ୍ତମାନ ବେଲୁନଟିକୁ ଫୁଙ୍କି ପୂର୍ଣ୍ଣକର ଏବଂ ପବନ ବାହାରି ଯିବା ପୂର୍ବରୁ ତାର ମୁହଁଟିକୁ ଚିପି ଧର । ବର୍ତ୍ତମାନ ଗାଡ଼ିଟିକୁ କୌଣସି ଟେବୁଲ୍ ଉପରେ କିମ୍ବା ସିମେଣ୍ଟ ଚଟାଣ ଉପରେ ରଖି ବେଲୁନ୍ ମୁହଁଟିକୁ ଛାଡ଼ିଦିଅ । ଦେଖିବ ବେଲୁନ ମୁହଁ ଦେଇ ଯେତେବେଳେ ପବନ ବାହାରି ଯାଉଥିବ ତାର ବିପରୀତ ଦିଗକୁ ଗାଡ଼ିଟି ପେଲି ହୋଇ ଚାଲି ଯାଉଥିବ । ପବନ ସରିଗଲେ ଗାଡ଼ିଟି ଛିଡ଼ା ହୋଇଯିବ । କିମ୍ବା କେବଳ ଗୋଟିଏ ରବର ବେଲୁନ୍ ନିଅ । ତାକୁ ଫୁଙ୍କି ଫୁଲାଅ । ପବନ ବାହାରି ନ ଗଲାପରି ତାର ମୁହଁକୁ ଧର । ବର୍ତ୍ତମାନ ସବୁ ଠିକ୍ ହୋଇ ଯାଇଛି, ଖାଲି ବାକି ଅଛି ତମ ବେଲୁନଟି ଉଡ଼ିବାକୁ । ଫାଙ୍କା ଜାଗାକୁ ଯାଅ, ସେହିଠାରେ ବେଲୁନ୍ ମୁହଁଟିକି ଛାଡ଼ିଦିଅ । ଦେଖିବ ବେଲୁନଟି କଣ୍ଟିବାଟ ଉପରକୁ ଉଠିଯାଇ ପବନ ସରିଗଲା ପରେ ତଳକୁ ଖସି ପଡ଼ୁଛି । ଠିକ୍ ସେହିପରି ଭାବରେ ଯେତେବେଳେ ଜେଟ୍ ବିମାନର ପଛପଟ ଦେଇ ଗ୍ୟାସ ଭୀଷଣ ବେଗରେ ନିର୍ଗତ ହୁଏ, ତାହା ଜାହାଜଟିକୁ ଆଗକୁ ଆଗେଇଦିଏ—ଜାହାଜଟି ବିମାନ ଘାଟୀ ମଧ୍ୟରେ ଭୀଷଣ ଗତିରେ ଦୌଡ଼ୁଥିବା ସମୟରେ ବିପରୀତ ଦିଗରୁ ବହୁଥିବା ପବନର ଗୁରୁତ୍ୱ ବିମାନ ସମେତ ଯାତ୍ରୀମାନଙ୍କ ଓଜନଠାରୁ ବଳି ପଡ଼େ, ସେତେବେଳେ ଜାହାଜଟି ମାଟି ଛାଡ଼େ ।

କେବଳ ଯେ ଏଥିପାଇଁ ଜାହାଜଟି ଉପରକୁ ଉଠେ ତାହା ନୁହେଁ; ଜାହାଜଟିକୁ ଉପରକୁ ଉଠାଇବାରେ ସାହାଯ୍ୟ କରେ ତାର ଡେଣା ଦୁଇଟି ଏବଂ ଲାଞ୍ଜରେ ଥିବା ଉତ୍ତୋଳକ (**Elevator**) ଦୁଇଟି ।

ଡେଣାଗୁଡ଼ିକ ଜାହାଜର ଗଣ୍ଡି ସହିତ ସମାନ୍ତର ଭାବରେ ଲାଗି ନ ଥାଏ—ଟିକିଏ ତେର୍ଯ୍ୟକ୍ ଭାବରେ । ଜାହାଜଟି ଦୌଡ଼ିବା ବେଳେ ବିପରୀତ ଦିଗରୁ ଯେଉଁ କଡ଼ା ପବନର ସୁଅ ବହେ ତାହା ପକ୍ଷୀ ଦୁଇଟି ଦେହରେ ମାଡ଼ ଖାଏ ଏବଂ ପକ୍ଷୀ ସମେତ ଜାହାଜକୁ ଉଠାଇବାକୁ ଚେଷ୍ଟା କରେ । ପକ୍ଷୀ ଗୁଡ଼ିକର ତେର୍ଯ୍ୟକତା ବଦଳିଲେ ଉଠିବାର ଶକ୍ତି ମଧ୍ୟ ବଦଳେ ।

ଉତ୍ତୋଳକ ଲାଞ୍ଜର ଦୁଇପାଖରେ ଛୋଟ ଛୋଟ ଯେଉଁ ଦୁଇଟି ପକ୍ଷୀ ଲାଗି ଥାଏ, ତାହା ଦରକାର କବାଟପରି ଉପର ତଳ ହୁଏ । ଯେତେବେଳେ ଏହା ଉପରକୁ ଉଠେ, ବହୁଥିବା ପବନର ସ୍ରୋତ ଏହା ଦେହରେ ବାଜେ ଏବଂ ଜାହାଜର ନାକ ଉପରକୁ ଉଠିଯାଏ, ସମୁଦାୟ ଜାହାଜଟି ଉପରକୁ ଉଠେ ।

# ହାସ୍ୟ ସୁଧା

ନଈରେ ଷ୍ଟୀମର ଚାଲିଛି । ମଝି ନଈରେ ହଠାତ୍ ବନ୍ଦ ହୋଇଗଲା । ଯାତ୍ରୀ କାପ୍‌ଟେନଙ୍କୁ ପଚାରିଲେ 'ଷ୍ଟୀମର ବନ୍ଦ ହେଲା କାହିଁକି ?"

ଉତ୍ତର ମିଳିଲା—'କୁହୁଡ଼ି'

ଯାତ୍ରୀ—କାହିଁ ଆକାଶ ତ ଖୁବ୍ ପରିଷ୍କାର ଅଛି, ନକ୍ଷତ୍ର ଦିଶୁଛନ୍ତି ।

କାପ୍‌ଟେନ୍—ଇଂଜିନ୍‌ର ବଏଲର୍ ଫାଟିଲେ ସିନା ଆମର ଗତି ଉପରକୁ ହୁଅନ୍ତା । ବର୍ତ୍ତମାନ ପରି ଆମେ ସାମନାକୁ ଚାଲୁଛୁ ।

× × ×

ଜେଲ୍ ପରିଦର୍ଶକ କମିଟିର ଜଣେ ଗୋରା ସଭ୍ୟ ପାଗଳାଖାନା ଦେଖିବାକୁ ଯାଇଥିଲେ । ବହୁତମସ୍ତିଷ୍କ ବହୁ ନରନାରୀ ସେଠାରେ ରହି ଚିକିତ୍ସିତ ହେଉଥାନ୍ତି । ସେଦିନ ରାତିରେ ଗୋଟାଏ ନାଚର ଆୟୋଜନ ହେଲା । ଗୋରା ପରିଦର୍ଶକଙ୍କୁ ଉକ୍ତ ପାଗଳାଖାନାର ଜଣେ ମହିଳାଙ୍କ ସଙ୍ଗେ ନାଚିବାକୁ ପଡ଼ିଲା ।

ମହିଳା ତାଙ୍କୁ କହିଲେ,"ମୁଁ ଆପଣଙ୍କୁ ପୂର୍ବରୁ କେବେ ଏଠାରେ ଦେଖି ନାହିଁ । ଆପଣ କେତେଦିନ ହେଲା ଏଠାରେ ରହିଲେଣି ?"

ସାହେବ—ଏଇତ କାଲିମାତ୍ର ଆସିଛି, ଜେଲ୍‌ପରିଦର୍ଶକ ଭାବରେ ।

ମହିଳା—ଓଃ, ମୁଁ କେତେ ବୋକା ! ଆପଣଙ୍କୁ ଦେଖିଲା ବେଳଠୁଁ ମୁଁ ଜାଣିଥିଲି ଆପଣ ହୁଏତ ପରିଦର୍ଶକ କିମ୍ବା ପାଗଳାଖାନାର ଜଣେ କଏଦୀ ହୋଇଥିବେ । କିନ୍ତୁ ଠିକ୍ କରି ଜାଣିବି କେମିତି ? ପ୍ରଭେଦ ଏତେ କମ୍ !

× × ×

ସଙ୍କର୍ଷଣ ବାବୁ ତାଙ୍କ ସ୍ତ୍ରୀ ଓ ୪ ପିଲାଙ୍କୁ ସଙ୍ଗରେ ନେଇ ବଜାରବୁଲିବାକୁ ଯାଇଥିଲେ । ଫେରିଲା ବେଳକୁ ଜଣେ ଟାକ୍‌ସିବାଲାକୁ ପଚାରିଲେ, "ଆମକୁ ବଡ଼ବଜାରରେ ଛାଡ଼ିଦେଲେ କେତେ ଭଡ଼ା ନେବୁ ?"

'ଆପଣ ଦୁଇଜଣଙ୍କୁ ଜଣପିଛା ଟ ୨୯ କରି ନେବି । ପିଲାମାନଙ୍କୁ ସେମିତି ମାଗେଣା ନେଇଯିବି ।'

ସଙ୍କର୍ଷଣବାବୁ ଏହା ଶୁଣି ପିଲାମାନଙ୍କୁ କହିଲେ, "ଉଠରେ ପିଲାଏ, ଗାଡ଼ିରେ ମଜାରେ ବସି ଆଗ ଘରକୁ ଚାଲିଯାଅ । ମାଆ ଆଉ ମୁଁ ପଛରେ ରିକ୍‌ସାରେ ଯାଉଛୁ ।"

× × ×

ସୀତାର ବାରମ୍ବାର ଅବାଧ୍ୟତା ଲକ୍ଷ୍ୟ କରି ତାର ମା ଶେଷକୁ ତାକୁ ବାଟକୁ ଆଣିବା ଉଦ୍ଦେଶ୍ୟରେ ଏଇ-କଥା କହିଲେ—"ମୁଁ ଯେତେବେଳେ ପିଲା ଥିଲି ତୋ ଅଈଙ୍କ କଥା ବରାବର ମାନୁଥିଲି । ତୋ ଅଈ ଯେତେ-ବେଳେ ପିଲା ଥିଲେ, ସେ ତାଙ୍କ ମା'ଙ୍କ କଥା ସେହିପରି ମାନୁଥିଲେ ।"

ସୀତା କହିଲା—"କିନ୍ତୁ କୋଉଁ ପାଜି ପହିଲେ ଏ ତାମସା ଆରମ୍ଭ କରିଥିଲା ?"

× × ×

ନୂତନ ନିଯୁକ୍ତ ହୋଇଥିବା ଜଣେ ସୈନିକ ପାଟିରେ ସିଗାରେଟ ପୂରାଇ ଉପରିସ୍ଥ କର୍ମଚାରୀଙ୍କୁ ପ୍ରଣାମ ନ କରି ଚାଲି ଯାଉଥିବାବେଳେ କର୍ମଚାରୀ ତାକୁ ଅଟକାଇ ପଚାରିଲେ "କିରେ, ସାଲ୍ୟୁଟ ନ କରି ସିଗାରେଟ୍ ଧୂଆଁ ଛାଡ଼ି ବେଶ୍ ନବାବଙ୍କ ପରି ତ ଚାଲିଯାଉଛୁ ।' ସୈନିକ ଠିଆ ହୋଇ ଉତ୍ତର ଦେଲା,'ଆଜ୍ଞା, ସର୍ଜେଣ୍ଟ ମେଜର ସେ ଦିନ ପରା କହିଲେ—ସିଗାରେଟ ପାଟିରେ ପୂରାଇ କାହାକୁ ସାଲ୍ୟୁଟ କରିବ ନାହିଁ ।'

—o—

ଯେତେବେଳେ ତଳକୁ ଖସେ ଜାହାଜର ମୁଣ୍ଡପାଖ ତଳକୁ ଖସିପଡ଼େ ଏବଂ ସମୁଦାୟ ଜାହାଜଟି କ୍ରମେ କ୍ରମେ ଖସିଆସେ ତଳକୁ । ଏସବୁ ଚାଳକର ଇଚ୍ଛାନୁଯାୟୀ ହୋଇଥାଏ ।

ଯେତେବେଳେ ଚାଳକ ଜାହାଜଟିକୁ ବାମ ପାଖକୁ ବୁଲାଇବାକୁ ଚେଷ୍ଟା କରେ, ମଙ୍ଗଧରି (Rudder) ଟିକୁ ବାମ ପାଖକୁ ଏବଂ ଡାହାଣ ପାଖକୁ ବୁଲାଇବାକୁ ଇଚ୍ଛା କଲେ ଡାହାଣ ପାଖକୁ ବୁଲାଏ ।

—o—

# ଦେଲାବାରଙ୍କ କେମେରା

ଶ୍ରୀ ବିପିନବିହାରୀ ମହାନ୍ତି

ଅକ୍‌ସଫୋର୍ଡର ଏକ ବୈଜ୍ଞାନିକ ଇଞ୍ଜିନିୟର ମି. ଦେଲବାର ଏଭଳି ଏକ କେମେରା ନିର୍ମାଣ କରିଛନ୍ତି ଯାହା ଆମର ରକ୍ତ-ବିନ୍ଦୁର ଖୁବ୍ ବଡ଼ ଚିତ୍ର ନେଇ ଶରୀରର ସମ୍ପୂର୍ଣ୍ଣ ଅଙ୍ଗଗୁଡ଼ିକର ମଧ୍ୟ ପରିଚୟ ଦେଇ ପାରେ । ଉକ୍ତ ଇଞ୍ଜିନିୟର କହିଛନ୍ତି ଯଦି କେହି ଡାକ୍ତର ତାଙ୍କ ପାଖକୁ କୌଣସି ରୋଗୀର ରକ୍ତ ପଠାଇ କୌଣସି ଏକ ନିର୍ଦ୍ଦିଷ୍ଟ ଅବୟବର ପରୀକ୍ଷା କରି ଦେବାକୁ ଅନୁରୋଧ କରେ ଓ କୌଣସି ରୋଗର ଲକ୍ଷଣ ଜାଣିବାକୁ ଇଚ୍ଛାକରେ ତେବେ ଏହି ନୂତନ କେମେରା ସେହି ଅବୟବର ବାସ୍ତବିକ୍ ସ୍ଥିତିର ଚିତ୍ର ନେଇ ରୋଗର ଲକ୍ଷଣ ଦ୍ୱାରା ରୋଗ କଅଣ ହୋଇଛି କହି ପାରିବ । ରୋଗଦ୍ୱାରା ପ୍ରଭାବିତ ଅଂଶ ନେଗେଟିଭରେ ଅଙ୍କିତ ହୋଇଯିବ । ରୋଗୀର ଉପସ୍ଥିତି ଆବଶ୍ୟକ ହେବ ନାହିଁ ।

ଏହି କେମେରାର ଆକାର ବଡ଼ ଓ ବାକ୍‌ସ ଭଳି । ଏହାର ଏକ ପାର୍ଶ୍ୱରେ ଫ୍ଲେଟ ବାକ୍‌ସ ଭଳି ଆଲୋକ ଦେବା ମାଧ୍ୟମ 'ଫୋକସିଂ ଚେମ୍ବର' ଓ ଅନ୍ୟ ଭିନ୍ନ ପାର୍ଶ୍ୱରେ ତିନୋଟି ଟ୍ୟୁନିଙ୍ଗ୍ ଡାଏଲ୍ ରହିଛି । ଏହା ଗୁରି ଗୋଟି ଛିଡ଼ ଦ୍ୱାରା ରହେ ।

ଏଥିରେ ଚିତ୍ର ନେବାକୁ ହେଲେ ଆଙ୍ଗୁଳିରୁ ରକ୍ତ ନେଇ 'ଫିଲ୍‌ଟର ପେପର'ରେ ରକ୍ତକୁ ଶୁଷ୍କ କରି ଦେବାକୁ ହୁଏ । ଚିତ୍ର ନେଲାବେଳେ ଏହି ଫିଲ୍‌ଟର ପେପରକୁ ବାକ୍‌ସର ଉପରେ ଏକ ସ୍ଥାନ ମଧ୍ୟରେ ଲଗେଇ ଦେବାକୁ ହୁଏ ଓ ଏକ ସାଧାରଣ 'ଫଟୋ-ଗ୍ରାଫିକ୍ ପ୍ଲେଟ୍ ଫୋକସିଂ ଚେମ୍ବରର ଉପର ଅଂଶରେ ଭରିଦେବାକୁ ହୁଏ ।

ଚିତ୍ର ଗ୍ରହଣ କରିବା ନିମନ୍ତେ କେମେରାର ଅଭ୍ୟନ୍ତରରେ ଆକାଶ-ବ୍ୟାପ୍ତ ସ୍ୱର ତରଙ୍ଗଗୁଡ଼ିକ ସାହାଯ୍ୟରେ "ପ୍ରତିଧ୍ୱନିର ସ୍ଥିତି" ଉତ୍ପନ୍ନ କରାଯାଏ । ଏହାର ନିର୍ମାତା କହନ୍ତି ଯେ ଏହି ବିଧିରେ ପ୍ରକୃତି ମଧ୍ୟରେ ପ୍ରତିକ୍ଷଣ ବିକୀର୍ଣ୍ଣ ହେଉଥିବା ତେଜଶକ୍ତି (ରେଡିଏଣ୍ଟ ଏନାର୍ଜି) ଫୋକାସିଂ ଚେମ୍ବର ଦେଇ ଯାଇଥାଏ ଓ ପ୍ଲେଟରେ ପ୍ରତିବିମ୍ବିତ ହୁଏ । ଏହା ପରେ ଦଶ ସେକେଣ୍ଡ ପର୍ଯ୍ୟନ୍ତ ପ୍ଲେଟରେ ଆଲୋକ ରଶ୍ମି ପକାଇ ଥାଏ । ପରେ ଏହାକୁ ସାଧାରଣ ଚିତ୍ରଭଳି ବିକଶିତ (ଡେଭଲପ୍) କରି ନେବାକୁ ହୁଏ ।

ଚିତ୍ର ନେବାର ଏହି ବିଧି ବିଚିତ୍ର ପ୍ରତୀତ ହୁଏ । କାରଣ ଏଥିରେ ପ୍ରତିଧ୍ୱନିର ସ୍ଥିତି ଉତ୍ପନ୍ନ କରି 'ତେଜଶକ୍ତି' (ଏନାର୍ଜି) ଆଣିବାର କଥା, କିନ୍ତୁ ଏହାହିଁ ତ ଏହି କେମେରାର ବିଶେଷତ୍ୱ । ଇଞ୍ଜିନିୟର ଦେଲବାରଙ୍କ ଏହି ନବୀନ ଆବିଷ୍କୃତ ସିଦ୍ଧାନ୍ତର ନାମ ହେଉଛି 'ତେଜଶ୍ଚେତନତା' ବା "ରେଡ଼ିଯୃସ୍‌ଥେସିୟା" ।

ଆଧୁନିକ ବିଜ୍ଞାନ ଏହି ସିଦ୍ଧାନ୍ତ କରି ଦେଖାଇଅଛି ଯେ ତାପ ବା ପ୍ରକାଶ ରୂପରେ ତେଜ ସର୍ବଦା ବିକୀର୍ଣ୍ଣ ହେଉଅଛି ଓ ପ୍ରତ୍ୟେକ ଜୀବନମୟ ଅବୟବ ଗୁଡ଼ିକରେ ଏହା ବିଦ୍ୟମାନ । ତେଜଶ୍ଚେତନତା ଏହାର ପ୍ରଥମ ପାଦକ୍ଷେପ ।

ରେଡ଼ିଯୃସ୍ଥେସିୟା ବା ତେଜଶ୍ଚେତନତାକୁ ବୋଧ-ଗମ୍ୟ କରିବା ନିମନ୍ତେ ଅବ୍ରାମସ୍ ନାମକ ଜଣେ କାଲିଫୋର୍ଣ୍ଣିୟାର ଡାକ୍ତର ଗୋଟିଏ ବାକ୍‌ସ ତିଆରି କରିଥିଲେ ଏବଂ ଏହାକୁ ଅବ୍ରାମସଙ୍କ ବାକ୍‌ସ କୁହାଯାଉ-ଥିଲା । ଏହି ଡାକ୍ତର ତେଜଶ୍ଚେତନତାର ପ୍ରଥମ ଅନୁସନ୍ଧାନକାରୀଙ୍କ ମଧ୍ୟରେ ପ୍ରଥମ । ଅବ୍ରାମସଙ୍କ ବାକ୍‌ସ ରୋଗପରୀକ୍ଷା କାର୍ଯ୍ୟରେ ଲାଗେ ନାହିଁ କିନ୍ତୁ ଅନ୍ୟ କୌଣସି ଉପାୟରେ ରୋଗ ପରୀକ୍ଷା ଶେଷ ହେଲେ ଏହାର ପୁଷ୍ଟି ନିମନ୍ତେ ଅବଶ୍ୟ ଏହି ବାକ୍‌ସ ଉପଯୋଗୀ ହୋଇଥାଏ ।

ଦେଲବାରଙ୍କର ଅଦ୍ଭୁତ କେମେରାରେ କିଛିଦିନ ପୂର୍ବେ ଜଣେ ବ୍ୟକ୍ତିର ରକ୍ତ-ବିନ୍ଦୁର ଚିତ୍ର ନିଆଯାଇଥିଲା । ତାହାର ବଡ଼ ଅନ୍ତ୍ର ମଧ୍ୟରେ କୌଣସି ଗଣ୍ଡଗୋଳ ଥିଲା । ଆଉଜଣେ ପୂର୍ଣ୍ଣ ସୁସ୍ଥ ଲୋକର ରକ୍ତ-ବିନ୍ଦୁର ଚିତ୍ର ମଧ୍ୟ ନିଆଗଲା ଏବଂ ଦୁଇଟି ଚିତ୍ରକୁ ବିକଶିତ କରି ଦେଖାଗଲା

ଯେ ରୋଗଗ୍ରସ୍ତ ଅନ୍ତ ଝୁଲ୍ ପଡ଼ିଥିଲା ଏବଂ ସେଥିରେ କଳାଦାଗ ପଡ଼ିଯାଇ ସମସ୍ତ ଅଂଶ ଧଳା ହୋଇ ଯାଉଥିଲା । ସୁସ୍ଥ ଲୋକର ଅନ୍ତରେ କଳାଦାଗ ନ ଥିଲା । ଏହି କଳାଦାଗହିଁ ରୋଗର ଲକ୍ଷଣ ।

ଗତବର୍ଷ ଅନେକ ଡାକ୍ତର, ଏହି କେମେରା ପ୍ରୟୋଗ ଦ୍ୱାରା ଜ୍ଞାତ ରୋଗଲକ୍ଷଣର ପ୍ରଚଳିତ ପରୀକ୍ଷା (ରକ୍ତ ପରୀକ୍ଷଣ, ଏକ୍ସରେ' ଆଦି) ଦ୍ୱାରା ପ୍ରାପ୍ତ ପରିଣାମ ସହିତ ମିଳାଇ ଦେଖିଲେ ଯେ ସବୁ ପରୀକ୍ଷା ନିର୍ଭୁଲ୍ ଏବଂ କେମେରା ଠିକ୍ କାମ ଦେଉଛି । ଏହି କେମେରାର ସବୁଠାରୁ ଶ୍ରେଷ୍ଠ ଶକ୍ତି ହେଉଛି "ବିକୀର୍ଣ୍ଣ-ତେଜଃଶକ୍ତି"କୁ ଗ୍ରହଣ କରିବା ଶକ୍ତି, ଯାହାର ପ୍ରମାଣ ଏହାଦ୍ୱାରା ପ୍ରସ୍ତୁତ ଚିତ୍ର ସ୍ୱୟଂ ଦେଇଥାଏ ।

ଏହି ନୂତନ ବୈଜ୍ଞାନିକ ସିଦ୍ଧାନ୍ତ ସ୍ଥିର ହୋଇଯିବା ପରେ କେବଳ ରୋଗ-ପରୀକ୍ଷଣ କାହିଁକି ଅନ୍ୟାନ୍ୟ ବୈଜ୍ଞାନିକ କାର୍ଯ୍ୟରେ ଏହାର ପ୍ରୟୋଗ ହେବ । ତେଜ-ବିକୀରଣ ବା 'ରେଡ଼ିୟେସନ'ର ଫଳ ସ୍ୱରୂପ ଆଜି ରେଡ଼ିଓଫଟୋ, ରେଡ଼ିଓଧ୍ୱନି, ବେତାର ସମ୍ବାଦ ବହନ ଆଦି ସମ୍ଭବ ହୋଇଛି । କିଏ ଜାଣେ ତେଜଶ୍ଚେତନତା ବା ରେଡ଼ିଓସ୍ଥେସିଆ ମଧ୍ୟ ଦିନେ ମନରେ ଚିନ୍ତାକରିବା କଥାକୁ ଛବି ଆକାରରେ ଆମ ଆଖି ଆଗରେ ଥୋଇଦେଇ ପାରିବ ।

# ରେଶମ

ଅଧ୍ୟାପକ ଡକ୍ଟର ଶ୍ରୀ ବସନ୍ତ କୁମାର ବେହୁରା

ଆମେ ଯେତେ ପ୍ରକାର ଲୁଗାପଟା ପିନ୍ଧୁ, ସେ ସମସ୍ତ କୌଣସି ଗୋଟିଏ ପ୍ରକାର ଉପାଦାନରେ ପ୍ରସ୍ତୁତ ନୁହେଁ । ଆମର ପ୍ରଧାନ ଓ ସାଧାରଣ ବ୍ୟବହାର୍ଯ୍ୟ ପରିଧେୟ ସୂତା ନିର୍ମିତ । ଏହା ଉଦ୍ଭିଦଜ । କପା ଗଛର ଫଳ ପାଚି ଫାଟିଲେ ତା' ଭିତରୁ ତୁଳା ବାହାରେ । ସେହି ତୁଳାରେ ସୂତା ତିଆରି ହୋଇ ସେଥିରେ ଲୁଗା ଓ ଅନ୍ୟାନ୍ୟ ବ୍ୟବହାର ପାଇଁ କନା ବୁଣାହୁଏ । ଶୀତ-ଦିନେ ଆମେ ପଶମ ବସ୍ତ୍ର ବ୍ୟବହାର କରୁ । ଏହା ପ୍ରାଣୀଜ । ମେଣ୍ଢାର ଲୋମରେ ପଶମ ବସ୍ତ୍ର ପ୍ରସ୍ତୁତ ହୋଇଥାଏ । ହିମାଳୟର ଉଚ୍ଚ ସ୍ଥାନମାନଙ୍କରେ, ଶୀତ-ପ୍ରଧାନ ପାଶ୍ଚାତ୍ୟ ଦେଶମାନଙ୍କରେ ତଥା ତୁଷାରାବୃତ ମେରୁ ପ୍ରଦେଶରେ ଶୀତକଷ୍ଟରୁ ରକ୍ଷା ପାଇବା ପାଇଁ ଲୋକେ ଚମଡ଼ାର ପୋଷାକ ପିନ୍ଧନ୍ତି । ବଜାରରେ ଆଜିକାଲି ନାନା ପ୍ରକାର ସିଲ୍କ ବା ରେଶମ କନା ମିଳେ । ଏଗୁଡ଼ିକ ମଧ୍ୟରୁ ଅଧିକାଂଶ ପ୍ରକୃତ ରେଶମ ନୁହେଁ । ଏହାକୁ କୃତ୍ରିମ ରେଶମ କହନ୍ତି । କାଠରେ ସେଲ୍ୟୁଲୋଜ୍ (Cellulose) ନାମକ ପଦାର୍ଥ ବେଶୀ ପରିମାଣରେ ବିଦ୍ୟମାନ । କୃତ୍ରିମ ରେଶମ ବା ରେୟନ୍ (Rayon) ଏଥିରେ ତିଆରି ।

ପ୍ରକୃତ ରେଶମ ଗୋଟିଏ ପ୍ରକାର ପୋକର ଖୋସାରୁ ପ୍ରସ୍ତୁତ ହୁଏ । ଶୀତକାଳରେ ଆମେ ଯେଉଁ ଏଣ୍ଡି ଚଦର ବ୍ୟବହାର କରୁ ଏବଂ ବହୁ ମୂଲ୍ୟରେ ଯେଉଁ ଏଣ୍ଡି, ଟସର, ମଠକା ପ୍ରଭୃତି ରେଶମ କନା ବିକ୍ରୀ ହୁଏ, ସେ ସବୁ ଯଥାକ୍ରମେ ଏଣ୍ଡି ପୋକ, ଟସର ପୋକ ଓ ମଠକା ପୋକ ନାମରେ ପରିଚିତ । ଦିନ-ବେଳେ ନାନା ଜାତିର ପ୍ରଜାପତି ଉଡ଼ି ବୁଲିବାର ଦେଖାଯାନ୍ତି । ଏମାନେ ବସିଲେ ପିଠି ଉପରକୁ ଡେଣାକୁ ସମାନ୍ତରାଳ ଭାବେ ଭାଙ୍ଗି ଦିଅନ୍ତି । ରାତିରେ ଜାତିଏ ପ୍ରଜାପତି ପରି କୀଟ ଆଲୁଅ ପାଖକୁ ଆସନ୍ତି । ଏମାନେ ବସିଲାବେଳେ ଡେଣା ଗୁଡ଼ିକ ଅଧା ବୁଜା ହୋଇ ରହେ ଓ ଅନେକ ପରିମାଣରେ ତ୍ରିଭୁଜାକୃତି ଧାରଣ କରେ । ଏହି କୀଟମାନଙ୍କୁ ତ୍ରିଭୁଜ ପ୍ରଜାପତି ବା ମଥ୍ (Moth) କୁହାଯାଏ । ଉପରେ କୁହାଯାଇଥିବା ରେଶମ ପୋକ ଗୁଡ଼ିକ ବିଭିନ୍ନ ଜାତିର ତ୍ରିଭୁଜ ପ୍ରଜାପତି ।

ମଥ୍‌ମାନଙ୍କର ଜୀବନ ଇତିହାସ ପ୍ରଜାପତିମାନଙ୍କର ଜୀବନ-ଇତିହାସ ଅନୁରୂପ । ମାଈ ମଥ୍ ଗଛରେ ପତ୍ର ତଳ ପାଖରେ ଅଣ୍ଡା ଦିଏ । ସାଧାରଣତଃ ଏଣ୍ଡିପୋକ ଗବଗଛରେ, ଟସର ତୁତ ବା ବରକୋଳି ଗଛ ଓ

ମହିବା ପନାଖ ଗଛରେ ଜନ୍ମ ହଏ । କାରଣ, ଜନ୍ମରୁ କିଛିଦିନ ପରେ ଯେଉଁ ଛୁଆ ବାହାରନ୍ତି, ସେମାନେ ସେହି ସେହି ଗଛର ପତ୍ର ଖାଇ ଜୀବନ ଧାରଣ କରନ୍ତି । ଶୁକମାନେ ପତ୍ର ଖାଇ ବଢ଼ିବାରେ ଲଗନ୍ତି । କିଛି ଦିନପରେ, ଶୁକ ଗଛର ଏକ ନିରୋଳା ସ୍ଥାନକୁ ଯାଇ ମୁଖରୁ ଏକ ପ୍ରକାର ଲାଳ ବାହାର କରି ନିଜ ଦେହ ଚାରିପଟେ ଗୁଡ଼ାଏ । ପବନ ବାଜି ଶୁଖିଲେ ଏହା ସୂତା ଆକାରର ହୋଇ ଖୋସାରେ ପରିଣତ ହୁଏ । ଶୂକ ଏହି ଖୋସା ଭିତରେ ଆବଦ୍ଧ ହୋଇଯାଏ । ଏହା କିଭୂକ ପ୍ରଜାପତିର ପ୍ୟୁପା ଅବସ୍ଥା । ଖୋସା ଭିତରେ ଶୂକର ରୂପାନ୍ତର ଘଟେ । ତା' ଭିତରେ ସେ ପୂର୍ଣ୍ଣାଙ୍ଗ ମଥ୍‌ରେ ପରିଣତ ହୁଏ । ଖୋସାର ଗୋଟିଏ ପାଖର ଆବରଣ କାଟି ସେ ବାହାରି ଆସେ । ପୂର୍ଣ୍ଣାଙ୍ଗ ମଥ୍ ଖୁବ୍ ଅଳ୍ପଦିନ ବଞ୍ଚି ରହନ୍ତି । ଅଣ୍ଡିରି ଓ ମାଈ ମଥ୍‌ମାନଙ୍କର ମିଳନ ପରେ ମାଈ ପତଙ୍ଗ ଅଣ୍ଡା ଦିଏ ଓ ତା'ପରେ ତାର ମୃତ୍ୟୁ ଘଟେ । ଅଣ୍ଡିରି କୀଟ ତା' ଆଗରୁ ମରିଯାଏ । ରେଶମ ପତଙ୍ଗ ଦୁଇ ପ୍ରକାର । ପ୍ରକାରେ ବର୍ଷରେ ଥରେ ଜନ୍ମି ଦିଅନ୍ତି ( univolt ) ଓ ପ୍ରକାରେ ବର୍ଷରେ ବହୁବାର ଜନ୍ମ ଦେଇ ପାରନ୍ତି (multivolt) ।

ରେଶମ ବ୍ୟବସାୟୀମାନେ ରେଶମ ଉତ୍ପାଦନ ପାଇଁ ବହୁସଂଖ୍ୟାରେ ରେଶମ ପୋକ ପାଳନ କରନ୍ତି । ସେମାନେ ପ୍ୟୁପାକୁ ଗରମ ପାଣିରେ ପକାଇ ମାରି ଦିଅନ୍ତି । କାରଣ ପ୍ୟୁପା ପୂର୍ଣ୍ଣାଙ୍ଗ ମଥ୍‌ରେ ପରିଣତ ହୋଇ ଖୋସା କାଟି ବାହାରି ଆସିଲେ ସୂତା ଛିଣ୍ଡି ଛିଣ୍ଡି ଯାଏ ।

ରେଶମ କୀଟ ପାଳନ ଏକ ଲାଭ-ଜନକ ବ୍ୟବସାୟ । ଭାରତର ଅନେକ ସ୍ଥାନରେ ରେଶମ କାରଖାନା ଅଛି । ଆମ ଓଡ଼ିଶାରେ ଏଣ୍ଡି, ଟସର ଇତ୍ୟାଦି ଉତ୍ପାଦନ କରାଗଲେ ମଧ୍ୟ ତାର ପରିମାଣ ଅତି ଅଳ୍ପ । ଫ୍ରାନ୍‌ସ, ସ୍ପେନ୍, ଇଟାଲୀ ପ୍ରଭୃତି ପାଶ୍ଚାତ୍ୟ ଦେଶମାନଙ୍କରେ ରେଶମ ଶିଳ୍ପ ଅତି ଉନ୍ନତ ଓ ବୈଜ୍ଞାନିକ ଉପାୟରେ ପ୍ରତିଷ୍ଠିତ । ଚୀନ, ଜାପାନ ଓ ବର୍ମାରୁ ଭାରତକୁ ବହୁ ପରିମାଣରେ ରେଶମ ଆମଦାନୀ କରାଯାଏ ।

ପ୍ରାଚୀନ କାଳରେ କେବଳ ଚୀନ ଦେଶରୁ ଭାରତକୁ ରେଶମ ଆମଦାନୀ କରାଯାଉଥିଲା । ସେଥି ପାଇଁ ରେଶମର ପୁରାତନ ନାମ ଚୀନାଂଶୁକ । ରେଶମ ପୋକ ଯେଉଁ ଖୋସା ତିଆରି କରେ ସେଥିରେ ଯେ ସୁନ୍ଦର, ମଜଭୁତ ଓ ମୂଲ୍ୟବାନ ବସ୍ତ୍ର ପ୍ରସ୍ତୁତ କରାଯାଇପାରେ, ଏହା ପ୍ରଥମେ ଉଦ୍ଭାବନ ତଥା ଶିଳ୍ପର ପ୍ରଚଳନ କରିଥିଲେ ଚୀନ ଦେଶର ଜଣେ ରାଣୀ । ଏହା ଖ୍ରୀଷ୍ଟପୂର୍ବ ୨,୭୦୦ର କଥା । ସେ ଥିଲେ ହୁଆଙ୍ଗ-ଲି ନାମକ ରାଜାଙ୍କ ମହିଷୀ । ଏହି ରାଜା ଚୀନଇତିହାସରେ ତାଙ୍କର ସଂଗଠନ ପରିକଳ୍ପନା, ସଡ଼କ ନିର୍ମାଣ ଓ ତଦ୍ଦ୍ୱାରା ବାଣିଜ୍ୟ ବିସ୍ତାର ପାଇଁ ବିଦିତ । ପଞ୍ଚମ-ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଚୀନର ଲୋକେ ତାଙ୍କର ଏହି ଜ୍ଞାନକୁ ଅନ୍ୟ ଦେଶମାନଙ୍କଠାରୁ ଗୋପନୀୟ ରଖିଥିଲେ । ବାହାର ଲୋକେ ଯେପରି ଏହାର ସୂଚନା ନ ପାଇବେ, ସେଥିପାଇଁ ଚୀନ ସରକାରଙ୍କର କଡ଼ା ବ୍ୟବସ୍ଥା ଥିଲା । କେହି ରେଶମ-ପୋକ ଚୀନ ବାହାରକୁ ନେବାର ଚେଷ୍ଟାକଲେ ତାର ଦଣ୍ଡ ଥିଲା ମୃତ୍ୟୁ ।

ଥରେ ଜଣେ ଚୀନ ରାଜକେମାଙ୍କର ଭାରତର ଏକ ରାଜାଙ୍କ ସହିତ ବିବାହ ହେଲା । ସେ ବାପ ଘରୁ ଆସିଲା ବେଳେ ଲୁଚାଇ ଜୁଡ଼ା ଭିତରେ ରେଶମ ପୋକ ନେଇ ଆସିଥିଲେ । ଭାରତକୁ ଆଣି ତାଙ୍କ ନଅର ଭିତରେ ଗୋଟିଏ ଘରେ ସେମାନଙ୍କୁ ଲୁଚାଇ ପାଳିଲେ ଓ ବସ୍ତ୍ର ବୁଣିଲେ । ରାଜ-ଦରବାରରେ ଥିବା ଚୀନ-ଦୂତ ଏହା ଜାଣି ପାରି ଭାରତୀୟ ରାଜାଙ୍କୁ କହିଲେ କି ରାଣୀ ଘରେ ବିଷାକ୍ତ-ସାପ ପାଳୁଛନ୍ତି । ନିର୍ବୋଧ ରାଜା ଦିନେ ରାଣୀ ଯେଉଁ ଘରେ ରେଶମ କୀଟ ପାଳନ କରୁଥିଲେ ସେଥିରେ ନିଆଁ ଲଗାଇ ଦେଲେ ।

ପାରସ୍ୟ ଦେଶର ଦୁଇଜଣ ଫକୀର ଚୀନ ଭ୍ରମଣରେ ଯାଇ ଫେରିଲାବେଳେ ବାଉଁବାଡ଼ିଭିତରେ ରେଶମ ପୋକର ଜନ୍ମ ଲୁଚାଇ ଆଣି ପାରସ୍ୟର ରାଜା ଜୁଷ୍ଟି-ନିଅନ୍‌ଙ୍କୁ ଉପହାର ଦେଇଥିଲେ । ସେ ମଧ୍ୟ କଡ଼ା ପହରା ଭିତରେ ରାଜନବରରେ ରେଶମକୀଟ ପାଳିଥିଲେ । ମାତ୍ର କ୍ରମେ ତାହା ଫୁଟିଅସି ହୋଇ ଯାଇଥିଲା ।

# ଚିଲିକାର ସ୍ୱାସ୍ଥ୍ୟକର ସ୍ଥାନ

ଡାକ୍ତର ଶ୍ରୀ ରାଧାଚରଣ ପଣ୍ଡା

ଚିଲିକା ହ୍ରଦମଧ୍ୟରେ ଥିବା ଦ୍ୱୀପ ପୁଞ୍ଜରେ କେତୋଟି ସ୍ୱାସ୍ଥ୍ୟକର ସ୍ଥାନ ଅଛି । ବହୁ ଦିନର କଠିଣ ରୋଗୀମାନେ ଏସବୁ ଯାଗାରେ ଯାଇ ମାସେ ଦୁଇମାସ ରହିଲେ ଏଠା ଜଳବାୟୁ ସେବନ କରି ନିଶ୍ଚେ ଭଲ ହୋଇ ପାରନ୍ତେ । ଏ ସ୍ଥାନର ପାଣି ଖୁବ୍ ଭଲ, ବାୟୁ ଲବଣାକ୍ତ, ସ୍ୱାସ୍ଥ୍ୟ ଭଲ କରେ । ଯକ୍ଷ୍ମା ଓ କାଶ ରୋଗୀ ପକ୍ଷରେ ସମୁଦ୍ର କୂଳିଆ ଯାଗାର ଜଳବାୟୁ ଅତି ହିତକର ଅଟେ । ଏ ସ୍ଥାନଗୁଡ଼ିକ ଏପର୍ଯ୍ୟନ୍ତ ଲୋକଲୋଚନ ଅଗୋଚରରେ ରହିଛି । ଦେଶର ଜନନାୟକମାନେ ଏବଂ ସରକାର ଇଚ୍ଛାକଲେ ଏସବୁ ସ୍ୱାସ୍ଥ୍ୟକର ସ୍ଥାନଗୁଡ଼ିକର ସଦ୍‌ବ୍ୟବହାର କରିପାରନ୍ତି ।

ବଂଗୋପସାଗରର ନିମ୍ନ ଭାଗରେ ମାନ୍ଦ୍ରାଜ ଓ କଲିକତାଠାରୁ ପ୍ରାୟ ୭୦୦ ମାଇଲ ଦୂରରେ ଥିବା ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜଗୁଡ଼ିକୁ ଲୋକବସତି କରିବା ପାଇଁ କେନ୍ଦ୍ରସରକାର ଗୃହକୋଟି ଟଙ୍କା ଖରଚ କରୁଛନ୍ତି । ଇତିମଧ୍ୟରେ ୩।୪ ଶହ ପରିବାର ପୂର୍ବ-ପାକିସ୍ଥାନବାସୀ ସେଠାକୁ ଯାଇ ଘର କରି ରହିଲେଣି । ସୁଦୂର ଆଣ୍ଡାମାନକୁ ଉନ୍ନତ କରିବା ପାଇଁ ଯୋଗାଡ଼ ହେଉଛି ମାତ୍ର ଆଖିଆଗରେ ଏଇ ଓଡ଼ିଶା ଭିତରେ ଦୀର୍ଘ ୧୦୦ ବର୍ଗମାଇଲ ବିସ୍ତୃତ ଦ୍ୱୀପପୁଞ୍ଜକୁ ଉନ୍ନତ କରିବା ଦିଗରେ ଆମ ସରକାରଙ୍କ ଦୃଷ୍ଟି ପଡ଼ୁନାହିଁ । ଏଣିକି ହେଲେ ସରକାର ଇଚ୍ଛାକରିବେ ଓ ଏଠା ଲୋକମାନଙ୍କର ଉନ୍ନତ କରିବା ସଙ୍ଗେ ସଙ୍ଗେ ଚିଲିକା ଦ୍ୱୀପପୁଞ୍ଜରେ ଥିବା ନିମ୍ନ ସ୍ୱାସ୍ଥ୍ୟକର ସ୍ଥାନଗୁଡ଼ିକୁ ବିସ୍ତୃତ ସ୍ୱାସ୍ଥ୍ୟନିବାସ କରିବା ଯୋଗାଡ଼ କରିବେ ।

**ସ୍ଥାନ**—ନିମ୍ନ ଯାଗା ଗୁଡ଼ିକରେ ସ୍ୱାସ୍ଥ୍ୟ ନିବାସ କରିହେବ ।

**୧ । ରମ୍ଭାକନାର**—ଚିଲିକାର ପୂର୍ବ ଦିଗରେ ଚିଲିକା ଓ ସମୁଦ୍ର ମଧ୍ୟରେ ଅତି ବିସ୍ତୃତ ବାଲିବନ୍ତ ଅଛି । ଏହାର ଓସାର ପ୍ରାୟ ୨୦୦ ହାତ ଏବଂ ଲମ୍ବା ପ୍ରାୟ ୩୦ ମାଇଲ ! ଦକ୍ଷିଣରେ ଗଞ୍ଜାମ ଜିଲାର ପାଲୁରୁ ଗ୍ରାମଠାରୁ ଏହା ଆରମ୍ଭ ହୋଇ କ୍ରମେ କ୍ରମେ ଉତ୍ତରକୁ ଯାଇଛି, ମାଣିକ ପାଟଣା ନରସିଂହ ପାଟଣା ଦେଇ ପୁରୀ ଯାଏ ଯାଇଛି । ଏଇ ରାସ୍ତାଟି ଇଂରେଜମାନେ ଓଡ଼ିଶା ଅଧିକାର କରିବାର ବହୁ ଶହ ବର୍ଷ ପୂର୍ବରୁ ଗଞ୍ଜାମ ପୁରୀମଧ୍ୟରେ ଏକମାତ୍ର ରାସ୍ତା ଥିଲା । ଏ ରାସ୍ତାର ପ୍ରତି ଛ ମାଇଲ ଦୂରରେ ଗୋଟିଏ ପାନ୍ଥ ନିବାସ ଓ କୂଅ ଥିଲା । ଏ କୂଅ ଗୁଡ଼ିକର ପାଣି ମିଠା ରହେ । ପାନ୍ଥନିବାସ ଗୁଡ଼ିକ ଭାଙ୍ଗିଯାଇଛି । ଏଗୁଡ଼ିକୁ ମରାମତି କଲେ ସେଠାରେ ରୋଗୀ ରହି ପାରନ୍ତି । ଗୋଟିଏ ଗୋଟିଏ ଯାଗାରେ ୧୦।୧୫ ଜଣ ସ୍ୱଚ୍ଛନ୍ଦରେ ରହି ପାରନ୍ତି । ସାଧାରଣ ଖାଦ୍ୟ ଜିନିଷ ରାନ୍ଧି ଖିଆପିଆ କରିବେ ଓ ସମୁଦ୍ର ଏବଂ ଚିଲିକାର ବାୟୁ ସେବନ କରି ଯଥେଷ୍ଟ ବ୍ୟାୟାମ ଓ ଆରାମ ନେଇ ପାରନ୍ତି । କାଶ, ଶ୍ୱାସ ଏବଂ ଯକ୍ଷ୍ମା ରୋଗୀମାନଙ୍କ ପ୍ରତି ଏ ଯାଗାଟି ଭଲ ହେବ ।

**୨ । ନବା**—ମାଲୁଦର ପ୍ରାୟ ୧ ମାଇଲ ପୂର୍ବରେ ଗୋଟିଏ ବିସ୍ତୃତ ଯାଗା ଅଛି, ପୂର୍ବେ ଏଠାରେ ଲୋକ-ବସତି ଥିଲା । ମରହଟ୍ଟାମାନଙ୍କ ଅମଳରୁ ଏ ଅଞ୍ଚଳ ପ୍ରସିଦ୍ଧି ଲାଭ କରିଥିଲା । ଏ କ୍ଷଣି ସବୁ ଗାଁ ଉଠିଯାଇଛି । ଜନଶୂନ୍ୟ ଯାଗାଟିକୁ ଆବାଦ କରି ସେଠାରେ ଏକ ସ୍ୱାସ୍ଥ୍ୟନିବାସ କରିବାକୁ ହେବ । ଏଠାର ଜଳବାୟୁ ଭଲ । ଅଗ୍ନିମାନ୍ଦ୍ୟ ରୋଗ, ବାତ, କୃମି ଓ ରକ୍ତହୀନ ରୋଗୀମାନେ ଏଠାରେ ରହି ନିଜର ଖାଦ୍ୟ ପେୟ ଓ ସାଧାରଣ ଚିକିତ୍ସା ଦ୍ୱାରା ଭଲ ହୋଇ ପାରନ୍ତି ।

**୩ । ତିତପ**—ପାରିକୁଦ ଗଡ଼ର ୩ ମାଇଲ ପୂର୍ବରେ ତିତପ ଗ୍ରାମ । ଏଠାରେ ଗୋଟିଏ ଝାଡ଼ ବଣ ଭିତରେ ଅତି ସୁନ୍ଦର ପଦ୍ମ ପୁଷ୍କରିଣୀଟିଏ ଅଛି । ଏଇ ଝାଡ଼ ବଣରେ କେତୋଟି ସ୍ୱାସ୍ଥ୍ୟ ନିବାସ ନିର୍ମାଣ କରି ସାଧାରଣ ଜର, ରକ୍ତଦୋଷ ଓ ବାତ ପ୍ରଭୃତି ରୋଗୀଙ୍କୁ ରଖାଯାଇପାରେ । ଏଠାରେ ରୋଗୀମାନେ ବ୍ୟାୟାମ

କରିବା ପାଇଁ ବିସ୍ତୃତ ଯାଗା ରହିଛି । ଜଳବାୟୁ ଭଲ ।

**୪ । ନୂଆପଡ଼ା**—ପାରିକୁଦ ଦ୍ୱୀପର ଉତ୍ତର-ପୂର୍ବ ଦିଗରେ ନୂଆପଡ଼ା ଗ୍ରାମଟି ଅତି ଉଚ୍ଚାଯାଗାରେ ଅବସ୍ଥିତ । ଏହାର ପଶ୍ଚିମଭାଗରେ ବିସ୍ତୃତ ଚିଲିକା । ଉତ୍ତର ଦିଗରେ ପୁରୁଣା ଲୁଣ ତିଆରି ପଡ଼ିଆ ଗୁଡ଼ିକ ରହିଛି । ଏସବୁ ଅଞ୍ଚଳରେ ଏକାଧିକ ସ୍ୱାସ୍ଥ୍ୟନିବାସ ନିର୍ମାଣ କରି ରୋଗୀମାନଙ୍କୁ ରଖାଯାଇପାରେ ।

**୫ । କାଳୀଜୟୀପାହାଡ଼**—ଏଇ ପାହାଡ଼ର ଦକ୍ଷିଣ ଦିଗରେ ଏକାଧିକ ସ୍ୱାସ୍ଥ୍ୟନିବାସ ନିର୍ମାଣ କରି ରୋଗୀମାନଙ୍କୁ ରଖାଯାଇପାରେ । ଏଇ ପାହାଡ଼ରେ ଗୋଟିଏ କୃତ୍ରିମ ଜଳଭଣ୍ଡାର ତିଆରି ହୋଇଛି । ସେଠା ପାଣି ଭଲ ରହେ । ବାଲୁଗାଁ ଓ ଖଲ୍ଲିକୋଟ ଠାରୁ ପ୍ରତିଦିନ ଯା ଆସ କରିବା ପାଇଁ ଡଙ୍ଗାର ସୁବିଧା ଅଛି । ସାଧାରଣ ବାୟୁ ପରିବର୍ତ୍ତନପାଇଁ ମଧ୍ୟ କେତେକ ରୋଗୀ ଆସି ଏଠାରେ ଦିନାକେତେ ରହି ପାଇପାରନ୍ତି ।

**୬ । ବରକୁଦ**—ଖଲ୍ଲିକୋଟ ଷ୍ଟେସନ ଠାରୁ ପ୍ରାୟ ୩ ମାଇଲ ପୂର୍ବରେ ଚିଲିକା ମଧ୍ୟରେ ଥିବା ଏକ ଦ୍ୱୀପରେ ବିସ୍ତୃତ ବରଗଛଗୁଡ଼ିକ ଅଛି । ଏଇ ଦ୍ୱୀପରେ ସ୍ୱାସ୍ଥ୍ୟନିବାସ କରି ଦୁର୍ବଳ ରୋଗୀଙ୍କୁ ରଖାଯାଇପାରେ ।

**୭ । ଚିଲିକା**—ଡଙ୍ଗା ଉପରେ ରହି ଚିଲିକାର ମଧ୍ୟ ଭାଗରେ (ଗଭୀର ଚିଲିକା) କେତେଦିନ ରହିଲେ ମଧ୍ୟ ସ୍ୱାସ୍ଥ୍ୟ ପରିବର୍ତ୍ତନ ହେବାର ନିଦର୍ଶନ ଅଛି । ଦକବି-ଶେଖର ଚିନ୍ତାମଣି ମହାନ୍ତି ଏଇ ରୀତିରେ ଚିଲିକା ଭ୍ରମଣ କରି ନିଜର ସ୍ୱାସ୍ଥ୍ୟ ଉନ୍ନତି କରିଥିଲେ ଏବଂ ଏଇ ଚିଲିକା ଭ୍ରମଣର ସ୍ମୃତିରକ୍ଷା ନିମନ୍ତେ ଦମହାନ୍ତି ଗୋଟିଏ ଗ୍ରନ୍ଥ "ଚିଲିକା ଭ୍ରମଣ" ଲେଖି ଯାଇଛନ୍ତି । ଏଇ ପୁସ୍ତକରୁ ଚିଲିକାର ବିଶେଷତ୍ୱ କଥା ଏବଂ ସ୍ୱାସ୍ଥ୍ୟ ପରିବର୍ତ୍ତନ ଦିଗରେ ଚିଲିକାର ଜଳବାୟୁ ଉପରି ହିତକର ଏସବୁ ବିଷୟ ସ୍ପଷ୍ଟ ଜାଣିହୁଏ ।

ଓଡ଼ିଶା ସରକାରଙ୍କର ବହୁମୁଖୀ ଯୋଜନା ମଧ୍ୟରୁ ଲୋକମାନଙ୍କ ସ୍ୱାସ୍ଥ୍ୟ ଉନ୍ନତିଦିଗରେ ଯେଉଁସବୁ କାର୍ଯ୍ୟ ଆରମ୍ଭ କରାଯାଉଛି ତନ୍ମଧ୍ୟରୁ ଯକ୍ଷ୍ମା ଓ କର୍କଟ ରୋଗୀଙ୍କ ଚିକିତ୍ସା ପାଇଁ 'ସ୍ୱାସ୍ଥ୍ୟନିବାସ' ଗୁଡ଼ିକ ତିଆରି ହେବାର ଅଯୋଜନ ହେଉଛି । ଏପରି କେତୋଟି 'ସ୍ୱାସ୍ଥ୍ୟନିବାସ' ଚିଲିକା ଦ୍ୱୀପପୁଞ୍ଜରେ ତିଆରି କଲେ ଏ ଶ୍ରେଣୀ ରୋଗୀ-ମାନଙ୍କର ବିଶେଷ ସୁବିଧା ହେବା ସଂଭବ । ଆଶାକରୁ, ସରକାର ଏ ଦିଗରେ ସଚେଷ୍ଟ ହେବେ, ତାଦ୍ୱାରା ଏସବୁ ଅନୁନ୍ନତ ଅଞ୍ଚଳ ଗୁଡ଼ିକର କ୍ରମୋନ୍ନତି ହେବ ।

—o—




## ଅନ୍ଧାରରେ ପୋଷାକ ଦିଶିବ

ସାଧାରଣ ଧଳା ପୋଷାକଠାରୁ ୧୫୦ ଗୁଣ ଉଜ୍ଜ୍ୱଳ ଦିଶିଲା ଭଳି ପୋଷାକ ଆବିଷ୍କୃତ ହୋଇଛି । ଏହା ଦିନରେ ସାଦା ପୋଷାକ ପରି ଦେଖାଯିବ ମାତ୍ର ଅନ୍ଧାର ରାତିରେ ଜକ୍ ଜକ୍ କରିବ । କୁର୍ତ୍ତାର କଲର, ବୋତାମ, ଟୋପି ଓ ବ୍ୟାଜ୍ ପ୍ରଭୃତି ଏହି ଉଜ୍ଜ୍ୱଳ ପଦାର୍ଥରେ ତିଆରି ହେଲେ ରାତିରେ ଏହି ପୋଷାକ ପରିଧାନ କରିଥିବା ବ୍ୟକ୍ତି ଅପେକ୍ଷାକୃତ ନିରାପଦରେ ଯିବା ଆସିବା କରି ପାରିବ । ମଟର ଚାଳକମାନେ ବହୁ ଦୂରରୁ ଏହାକୁ ଦେଖି ମନୁଷ୍ୟ ଯାଉଛି ବୋଲି ଜାଣି-ପାରି ସାବଧାନରେ ମଟର ଚଳାଇବେ ।

## ସୂର୍ଯ୍ୟାଲୋକରୁ ବିଜୁଳି

ବାଲ୍‌ଟିମୁର (ଯୁ.ରା, ଆମେରିକା) ବିମାନ ବାହିନୀର ଜଣେ କର୍ମଚାରୀ ପ୍ରକାଶ କରିଛନ୍ତି ଯେ ଏକ ନୂତନ ଧରଣର ବ୍ୟାଟେରୀ ଦ୍ୱାରା ସୂର୍ଯ୍ୟାଲୋକରୁ ବିଦ୍ୟୁତ୍ ଉତ୍ପା-ଦନ କରାଯାଇ ପାରୁଛି । ପ୍ରତ୍ୟେକ ଗୃହସ୍ଥ ତାର ଘରର ଛାତ ଉପରେ ଏହି ବ୍ୟାଟେରୀ ରଖିଲେ ସେଥିରୁ ଉତ୍ପନ୍ନ ବିଦ୍ୟୁତ୍ ଶକ୍ତି ଦ୍ୱାରା ଜଣେ ସାଧାରଣ ଗୃହସ୍ଥର ଆବଶ୍ୟ-କୀୟ ଆଲୋକ ଓ ବୈଦ୍ୟୁତିକ ସରଞ୍ଜାମ ୨୪ ଘଣ୍ଟା ଚାଲୁ ରହି ପାରିବ । କାର୍ବିନିୟମ୍‌ର ସ୍ଫଟିକ ସାହାଯ୍ୟରେ ଏହି ବ୍ୟାଟେରୀ ପ୍ରସ୍ତୁତ ହେଉଛି ।

( ୨୦ ପୃଷ୍ଠା ଦେଖନ୍ତୁ



# ବ୍ୟୋମ ଓ ବିମାନ

ଡଃ ହିବାର୍ଡ ଆମେରିକାର ସୁବିଖ୍ୟାତ ବିମାନ ନିର୍ମାଣ କାରଖାନା ଲକ୍‌ହିଡ୍‌ କର୍ପୋରେସନର ଭାଇସ୍ ପ୍ରେସିଡେଣ୍ଟ—ସେ ଏହି ପଦରେ ଗତ ୨୦ ବର୍ଷ ହେଲା କାର୍ଯ୍ୟକରି ବିଶେଷ ସୁଖ୍ୟାତି ଅର୍ଜନ କରିଛନ୍ତି । ସେ ବମ୍ବେଠାରେ ପ୍ରକାଶ କରି କହିଛନ୍ତି ଯେ ଆଗାମୀ ୧୦ ବର୍ଷ ଭିତରେ ପରମାଣୁ ଚାଳିତ ବିମାନ ଯାତ୍ରୀମାନଙ୍କୁ ଘେନି ଘଣ୍ଟାରେ ୧୦୦୦ ମାଇଲ୍ ବେଗରେ ଯାତାୟାତ କରିବ ।

× × ×

ବ୍ରିଟିଶ ଯାତ୍ରୀବାହୀ ବିମାନ 'ଭାଇକାଉଣ୍ଟ' ବର୍ତ୍ତମାନ ଇଉରୋପର ଆକାଶମାର୍ଗରେ ଖୁବ୍ ଲୋକପ୍ରିୟ ହୋଇଛି । ଏ ଜାତୀୟ ବିମାନର ଚାହିଦା ଦିନକୁ ଦିନ ପୃଥିବୀର ଚାରିଆଡ଼େ ବଢ଼ିବାରେ ଲାଗିଛି । ଆଜି ସୁଦ୍ଧା ୧୦୧ ଟି ବିମାନ ବିକି ହୋଇଗଲାଣି ଏବଂ ୧୪୩ ଟି ଅର୍ଡ଼ର ବାକୀ ପଡ଼ିଛି । ଏହା ବ୍ୟତୀତ ପ୍ରତିମାସରେ ନୂଆ ଅର୍ଡ଼ର ଆସି ପହଞ୍ଚୁଛି । ଏ ବିମାନଦ୍ୱାରା କମ୍ପାନୀମାନେ ବେଶୀ ଲାଭ ଉଠାଇପାରୁଛନ୍ତି (ପ୍ରତି ଉଡ଼ିବା ଘଣ୍ଟାରେ ପ୍ରାୟ ୪୮୫୦ଙ୍କା) ଏବଂ ଏଥିରେ ଦୁର୍ଘଟଣାର ହାର ସର୍ବାପେକ୍ଷା କମ୍ । ଇଉରୋପର ୪୭ ଟି ବ୍ୟୋମପଥରେ ୬ ମାସ ଉଡ଼ି ମଧ୍ୟ ଏହାର ସୁନାମରେ ଆଞ୍ଚ ଆସିନାହିଁ । ୧୯୫୩ ଅକ୍ଟୋବର ମାସରେ ଲଣ୍ଡନ ଓ ନିଉଜିଲଣ୍ଡ (୧୨,୩୬୭ ମାଇଲ୍) ମଧ୍ୟରେ ଯେଉଁ ବିମାନ ପ୍ରତିଯୋଗିତା ହୋଇଥିଲା, ସେଥିରେ ଏହି ବିମାନ ଅସାଧାରଣ କୃତିତ୍ୱ ଅର୍ଜନ କରିଛି । ବାଟରେ ୪ଟି ଜାଗାରେ ଓହ୍ଲାଇ ସୁଦ୍ଧା ४୦ ଘଣ୍ଟା ୪୩ ମିନିଟ୍‌ରେ 'ଭାଇକାଉଣ୍ଟ' ଏହି ଦୂରତା ଅତିକ୍ରମ କରି ପ୍ରଥମ ହୋଇଥିଲା । ଦ୍ୱିତୀୟ ବିଜେତା ବିମାନ ଏହାର ୯ ଘଣ୍ଟା ପରେ ଆସି ଲକ୍ଷ୍ୟସ୍ଥଳରେ ପହଞ୍ଚିଥିଲା ।

× × ×

୧୯୫୩ ବର୍ଷରେ K L M ବିମାନ କମ୍ପାନୀର ସମସ୍ତ ବିମାନ ଯେତେବାଟ ଉଡ଼ିଥିଲେ, ସେ ସବୁକୁ ଏକତ୍ର କଲେ ଯେଉଁ ଦୂରତ୍ୱ ହେବ, ତାହା ନିରକ୍ଷବୃତ୍ତ ଠାରେ ପୃଥିବୀର ୧୨୧୯ ଘେର୍‌ସଙ୍ଗେ ସମାନ ।

× × ×

ଆମେରିକା ବିମାନବାହିନୀର ଜଣେ ପାଇଲଟ୍ କାପ୍‌ଟେନ ସୋନେନବର୍ଗ ଘଣ୍ଟାରେ ୬୯୨·୮୨୩ ମାଇଲ୍ ଗତିରେ ଉଡ଼ି ବିମାନଚାଳନାରେ ନୂଆ ରେକର୍ଡ ସ୍ଥାପନ କରିଛନ୍ତି । ଗତବର୍ଷର ରେକର୍ଡ଼ ଥିଲା ୬୯୧ ମାଇଲ୍ ।

× × ×

ଆମେରିକାର ଏକ ସମ୍ବାଦରୁ ଜଣାଯାଏ ଏକ ନୂତନ ରଡାର ଆବିଷ୍କୃତ ହେବାଫଳରେ ଏଣିକି ବିମାନଯାତ୍ରା ଅଧିକତର ନିରାପଦ ହୋଇପାରିବ । ଏହି ରଡାର କି ଦିନରେ କି ରାତିରେ, ୧୫୦ ମାଇଲ୍ ଦୂରରୁ କୌଣସି ଝଡ଼ତୋଫାନର ଗତି ଏବଂ ଆକାରପ୍ରକାର ବିଷୟରେ ନିର୍ଭୁଲ ସଙ୍କେତ ଦେଇ ବିମାନଚାଳକଙ୍କୁ ସତର୍କ କରି-ପାରୁଛି । ବିଭିନ୍ନ ଜାଗାରେ ଏହି ରଡାର ପରୀକ୍ଷିତ ହୋଇ ସାରିଲାଣି । ସାଧାରଣତଃ ଝଡ଼ ବା ମେଘ ଥିଲେ ବିମାନର ବେଗ କମାଇଦିଆଯାଏ । ମାତ୍ର ଏହି ରଡାର ଯୋଗୁଁ ଚାଳକ ମେଘ ଓ ଝଡ଼ମୁକ୍ତ ପଥ ଚିହ୍ନିପାରି ବେଗ ନ କମାଇ ପୂର୍ବପରି ବିମାନ ଚଳାଇ ନେଉଛନ୍ତି ।

× × ×

ଆଗାମୀ ୧୦ ବର୍ଷ ଭିତରେ ଆମେରିକାର ବୈଜ୍ଞାନିକମାନେ 'ଆଟମିକ୍ ପ୍ଲେନ୍' ବା ପରମାଣୁ ଚାଳିତ ବିମାନ ତିଆରି କରିପାରିବେ ବୋଲି ଅନୁମାନ କରା-ଯାଉଛି । ଏହି ବିମାନଗୁଡ଼ିକ ଘଣ୍ଟାରେ ୧ ହଜାର ମାଇଲ୍ ବା ତହିଁରୁ ବେଶୀ ଉଡ଼ିପାରିବେ । ଏମାନଙ୍କର ଶକ୍ତି ମଧ୍ୟ ଅପରିମେୟ ହେବ । ୧୯୬୦ ବେଳକୁ ସେମାନେ ଗୋଟିଏ ବିମାନ ଚାଲୁ କରିବେ ଯାହାର ଗତି ଘଣ୍ଟାରେ ୫୬୦ ମାଇଲ୍ ହେବ ଏବଂ ଏହା ୯୫ ଜଣ ଯାତ୍ରୀ ନେଇ ଉଡ଼ିପାରିବ ।

# ଦେହରେ ପେନସିଲିନର କ୍ରିୟା

ଆଜିକାଲି ପେନ୍‌ସିଲିନର ନାମ କାହାକୁ ଅଜଣା ନାହିଁ । ଦୂର ପଲ୍ଲୀଗାଁରେ ମଧ୍ୟ ଲୋକେ ଏହି ଅଦ୍ଭୁତ ଔଷଧର ନାମ ଶୁଣିଲେଣି । ଅନେକ ସାଂଘାତିକ ରୋଗରେ, ବିଶେଷତଃ ଘା' ବଥ ଜାତୀୟ ରୋଗରେ ଏହା କୁହୁକ ପରି କାର୍ଯ୍ୟ କରେ । ଦେହଭିତର ଘା'କୁ ଏହା ସଙ୍ଗେ ସଙ୍ଗେ ଆପୃତ୍ର କରି ଆଉ ବଢ଼ିବାକୁ ଦିଏ ନାହିଁ । ଗତ ୨ୟ ବିଶ୍ୱଯୁଦ୍ଧ ପରଠାରୁ ଏହା ଡାକ୍ତରମାନଙ୍କ ହାତରେ ଏକ ଅମୋଘ ଅସ୍ତ୍ର ରୂପେ ବ୍ୟବହୃତ ହେଉଛି ।

ସମସ୍ତେ ପ୍ରାୟ ଜାଣନ୍ତି ଯେ ପେନ୍‌ସିଲିନ୍ ଇଂଜେକ୍‌ସନ ଆକାରରେ ଦିଆଯାଏ । ପୁଣି ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ଇଂଜେକ୍‌ସନ ନ ନେଲେ ପୂର୍ବେ ପ୍ରୟୋଗ କରାଯାଇଥିବା ଔଷଧର ଗୁଣ ନଷ୍ଟ ହୋଇଯାଏ । ସେଥିପାଇଁ ଡାକ୍ତରମାନେ ଘଣ୍ଟା ମିନିଟ୍ ଜଗି ପେନ୍‌ସିଲିନ ଦିଅନ୍ତି । ଏପରି କାହିଁକି କରାଯାଏ ତାହାର କାରଣ ଆଲୋଚନା କଲେ ଶରୀର ମଧ୍ୟରେ ପେନ୍‌ସିଲିନର କ୍ରିୟା ସମ୍ବନ୍ଧରେ ପ୍ରକୃତ ଧାରଣା ଆସେ ।

ଆମ ଦେହରେ ରୋଗର ଜୀବାଣୁମାନେ ପ୍ରବେଶ କରି ରକ୍ତରୁ ଏବଂ ଶରୀରର ଅନ୍ୟାନ୍ୟ ଅଂଶରୁ ସେମାନଙ୍କର ଖାଦ୍ୟ ସଂଗ୍ରହ କରି ବଢ଼ନ୍ତି । ଆମ ରକ୍ତରୁ ସେମାନେ ଅମ୍ଳଜାନ ମଧ୍ୟ ଗ୍ରହଣ କରନ୍ତି । ପେନ୍‌ସିଲିନ ଏହିଠାରେ ସେମାନଙ୍କୁ ବାଧା ଦିଏ । ଜୀବାଣୁମାନେ ଅମ୍ଳଜାନ ନ ପାଇ ଏବଂ ଖାଦ୍ୟ ଗ୍ରହଣ କରି ନ ପାରି ଆଉ ବଢ଼ି ପାରନ୍ତି ନାହିଁ, ଏକରକମ ଅଚଳ ହୋଇ ପଡ଼ନ୍ତି । ପେନ୍‌ସିଲିନର ଏପରି ଏକ ଗୁଣ ଅଛି ଯେ ଏହା ଜୀବାଣୁମାନଙ୍କ ପାଖକୁ ଆକୃଷ୍ଟ ହୋଇ ଚାଲିଯାଏ ଏବଂ ସେମାନଙ୍କ ଦେହରେ ଦୃଢଭାବରେ ଲାଖିରହେ ।

ଯେଉଁ ଔଷଧ ଠିକ୍ ଇଂଜେକ୍‌ସନ ଦିଆଯାଇ ଥାଏ, ସେତିକି ସକ୍ରିୟ ଥିବାପର୍ଯ୍ୟନ୍ତ ଜୀବାଣୁମାନେ ଅଚଳ ରହିଥାନ୍ତି । ଏଠାରେ ମନେରଖିବା ପ୍ରୟୋଜନ ଯେ ପେନ୍‌ସିଲିନ ସେମାନଙ୍କୁ ମାରିଦେଇ ନ ଥାଏ, ଅକର୍ମଣ୍ୟ କରି ପକାଇଥାଏ ମାତ୍ର । ତେଣୁ ଔଷଧ ଯଦି ବନ୍ଦ କରି ଦିଆଯାଏ, ତାହାହେଲେ ସେମାନେ ପୁଣି ମାତି ଉଠନ୍ତି ଏବଂ ରୋଗର ପ୍ରକୋପ ବଢ଼ିଯାଏ । ଏଣୁ ରୋଗୀ ରୋଗମୁକ୍ତ ହେବା ପର୍ଯ୍ୟନ୍ତ ପେନ୍‌ସିଲିନ୍ ଦିଆଯାଉଥାଏ । ଏଠାରେ ପ୍ରଶ୍ନ ହୋଇପାରେ, ପେନ୍‌ସିଲିନ ଯେତେବେଳେ ଜୀବାଣୁମାନଙ୍କୁ ମାରି ପାରେନାହିଁ, ସେମାନେ ତେବେ ମରନ୍ତି କପରି ବା ରୋଗୀ ଆରୋଗ୍ୟଲାଭ କରେ କପରି ? ଜୀବାଣୁମାନଙ୍କୁ ନଷ୍ଟ କରିବା ପାଇଁ ଭଗବାନ ଆମ ଶରୀରରେ ଶ୍ୱେତ ରକ୍ତକଣିକାରୂପୀ ଅସଂଖ୍ୟ ସୈନ୍ୟ ରଖିଛନ୍ତି । ପେନ୍‌ସିଲିନ ଯେତେବେଳେ ରୋଗ ଜୀବାଣୁମାନଙ୍କୁ ପଙ୍ଗୁ ଅବସ୍ଥାରେ ରଖେ, ସେହି ଅବସରରେ ଏହି ଶ୍ୱେତ ରକ୍ତକଣିକାମାନେ ନୂତନ ଶକ୍ତି ସଞ୍ଚୟ କରି ସେମାନଙ୍କୁ ଆକ୍ରମଣ କରି ମାରି ପକାନ୍ତି । ତେଣୁ ପ୍ରକୃତରେ ଦେଖିବାକୁ ଗଲେ ପେନ୍‌ସିଲିନ ପ୍ରତ୍ୟକ୍ଷ ଭାବରେ କୌଣସି ରୋଗକୁ ଆରୋଗ୍ୟ କରେ ନାହିଁ । ଆମର ପ୍ରାକୃତିକ ରୋଗ ନିବାରକ ଶକ୍ତିକୁ ସାହାଯ୍ୟ ଏବଂ ଦୃଢ଼ୀଭୂତ କରେ ମାତ୍ର ।

ଏହି ଔଷଧକୁ ଖାଇବାକୁ ନ ଦେଇ ଯନ୍ତ୍ରଣାଦାୟକ ଇଞ୍ଜେକ୍‌ସନ ଆକାରରେ ଦିଆଯାଏ କାହିଁକି ? କାରଣ ପାକସ୍ଥଳୀରେ ଥିବା ଅମ୍ଳରସଦ୍ୱାରା ପେନ୍‌ସିଲିନର ଗୁଣ ଅନେକ ପରିମାଣରେ ନଷ୍ଟ ହୋଇଯାଏ ତେଣୁ ଏହା ଅଭୀଷ୍ଟ ଫଳ ଦେଇ ପାରେନାହିଁ । ଏଇଥି ଯୋଗୁ ଇଞ୍ଜେକ୍‌ସନ ସାମାନ୍ୟ କଷ୍ଟଦାୟକ ହେଲେ ମଧ୍ୟ ପେନ୍‌ସିଲିନ ପ୍ରୟୋଗର ଶ୍ରେଷ୍ଠ ପନ୍ଥାରୂପେ ବିବେଚିତ ହୋଇଥାଏ ।



# ଆମେରିକାର କୃଷକ

ସୌରାଷ୍ଟ୍ରର ଶ୍ରୀ ଭୂପତିରାୟ ଦ୍ୱିବେଦୀ ଅନ୍ୟାନ୍ୟ ୨୯ ଜଣ ଭାରତୀୟ ଯୁବକଙ୍କ ସଙ୍ଗରେ ଗତବର୍ଷ ଆମେରିକା ଭ୍ରମଣରେ ଯାଇ ସେ ଦେଶର କୃଷକ ଓ କୃଷି ସମ୍ବନ୍ଧରେ ତାଙ୍କର ଅଭିଜ୍ଞତା ନିମ୍ନଲିଖିତ ବିବରଣୀରେ ଲିପିବଦ୍ଧ କରିଅଛନ୍ତି । ସଂସାରର ପାଠକ-ମାନଙ୍କ କୌତୂହଳ ଚରିତାର୍ଥ ନିମିତ୍ତ ତାହାର କେତେ-କାଂଶ ଏଠାରେ ଦିଆଗଲା ।

ଶ୍ରୀ ଦ୍ୱିବେଦୀ ଲେଖିଛନ୍ତି—

"ମୁଁ ସେଠାରେ ଦୁଇଟି ଷ୍ଟେଟ୍‌ରେ ୪ଟି ବିଭିନ୍ନ ପରିବାରର ଅତିଥିରୂପେ ରହିଥିଲି । ଏଠାରେ ଗୋଟିଏ ପରିବାରର କଥା କହୁଛି ।

ମିନୋସୋଟା ଷ୍ଟେଟ୍‌ର ଲିଙ୍କନ କାଉଣ୍ଟିରେ ମିଃ ଅର୍ଥର ସୋରେନସେନଙ୍କ ଘରେ ମୁଁ କିଛିଦିନ କଟାଇ ଥିଲି । କୃଷି ତାଙ୍କର ପ୍ରଧାନ ବ୍ୟବସାୟ । ତାଙ୍କ ପରିବାରରେ ସେ, ତାଙ୍କ ସ୍ତ୍ରୀ ଓ ତାଙ୍କର ୪ଟି ସନ୍ତାନ । ସ୍ତ୍ରୀଙ୍କୁ ୩୭ ବର୍ଷ ବୟସ, ସେ ଜଣେ ହାଇସ୍କୁଲ ଗ୍ରାଜୁଏଟ୍ । ବଡ଼ ପୁଅ ଅର୍ଣ୍ଣୋଲ୍‌ଡର ବୟସ ୧୪— ସେ ୧୦ମ ଶ୍ରେଣୀରେ ପଢ଼େ ଏବଂ ବାପାଙ୍କୁ କୃଷିକ୍ଷେତ୍ରରେ ସାହାଯ୍ୟ କରେ । ସାନପୁଅ ଲିଅନର ବୟସ ୯ ବର୍ଷ —ସେ ୪ର୍ଥ ଶ୍ରେଣୀରେ ପଢ଼େ । ସମୟେ ସମୟେ ସେ ମଧ୍ୟ ବାପାଙ୍କୁ କୃଷିକାମରେ ସାହାଯ୍ୟ କରେ । ସେ ଟ୍ରାକ୍‌ଟର ଚଳାଇ ଜାଣେ । ବଡ଼ଝିଅ ଏଲେନ୍‌ଙ୍କୁ ୧୧ ବର୍ଷ । ସେ ୮ମ ଶ୍ରେଣୀରେ ପଢୁଛି । ସଙ୍ଗୀତ ଓ ଘର-କରଣାରେ ତାର ଖୁବ୍ ଆଗ୍ରହ । ସେ ତାର ମାଙ୍କୁ ଘର କାମରେ ସାହାଯ୍ୟ କରେ । ୪ ବର୍ଷ ବୟସ୍କା ସାନ ଝିଅ ଜାନେଟ୍ ଦିନଯାକ ଘର ଚାରିପଟେ ଖେଳୁ-ଥାଏ । ମୋଟ ଉପରେ ପରିବାରଟି ବେଶ୍ ସୁଖଶାନ୍ତିରେ କାଳ କାଟନ୍ତି ।

ମିଃ ସୋରେନସେନ ୧୯୪୦ ମସିହାରେ ୬ ହଜାର ଡୋଲାର ( ଟ ୨୮,୬୮୦ ଙ୍କା ) ଦେଇ ୧୬୦ ଏକରର ଗୋଟିଏ କୃଷିକ୍ଷେତ୍ର କିଣିଥିଲେ । ଏହାଛଡ଼ା ସେ ପଡ଼ୋଶୀମାନଙ୍କଠାରୁ ଆଉ ୧୦୦ ଏକର ଜମି ଆଣି ଚାଷ କରୁଛନ୍ତି । ଏହି ଜମିର ମାଲିକମାନଙ୍କୁ ସେ ଉତ୍ପନ୍ନ ଫସଲର ୪୦ ଭାଗ ଦେଇ ଅବଶିଷ୍ଟ ୬୦ ଭାଗ ନିଜପାଇଁ ରଖନ୍ତି । ଆମେରିକାରେ ମୂଲିଆ ମଜୁରି ଖୁବ୍ ବେଶୀ— ଘଣ୍ଟାକୁ ଟ ୪୧ ରୁ ଟ ୯୮ ଯାଏ ଦେବାକୁ ପଡ଼େ— ତେଣୁ ଚାଷୀମାନେ ପ୍ରାୟ ମୂଲିଆ ନିଯୁକ୍ତ କରନ୍ତି ନାହିଁ ।

ସୋରେନସେନଙ୍କର ୨ଟି ଟ୍ରାକ୍‌ଟର ଛଡ଼ା ଆଧୁନିକ କୃଷି ଯନ୍ତ୍ରପାତି ସମସ୍ତ ଅଛି । ଏହା ସାହାଯ୍ୟରେ ବିହନ ବୁଣିବା, ଖତ ଦେବା, ଫସଲ କାଟିବା, ଶସ୍ୟ ପେଷିବା ଆଦି ସବୁ ହୋଇପାରେ । ଫସଲକୁ ବଜାରକୁ ପଠାଇବାପାଇଁ ସେ ଗୋଟିଏ ଟ୍ରକ୍ ମଧ୍ୟ ରଖିଛନ୍ତି । ପରିବାରର ବ୍ୟବହାର ନିମନ୍ତେ ତାଙ୍କର ଗୋଟିଏ ହଡ୍‌ସନ୍ ସିଡ଼ାନ ଗାଡ଼ି ଅଛି । ତା ଛଡ଼ା ଇଲେକ୍‌ଟ୍ରିକ୍ ଷ୍ଟୋଭ, ରେଫ୍ରିଜରେଟର, ଲୁଗାଧୁଆ କଳ, ସିଲେଇ କଳ ଆଦି ଅନେକ ବୈଦ୍ୟୁତିକ ଯନ୍ତ୍ରପାତି ସେ ରଖିଛନ୍ତି ।

ତାଙ୍କ ଦେଶର ଅନ୍ୟାନ୍ୟ କୃଷକଙ୍କ ପରି ସେ କୃଷି କରିବା ସଙ୍ଗେ ସଙ୍ଗେ ଅନେକ ପଶୁପକ୍ଷୀ ମଧ୍ୟ ପାଳିଛନ୍ତି । ତାଙ୍କର ୧୭ ଟି ଭଲ ଜାତିଆ ଗାଈ, ଓ ୧୩ଟି ବାଛୁରି ଅଛନ୍ତି । ଦୁଧ ଦୁହାଁ କଳ ସାହାଯ୍ୟରେ ପ୍ରତ୍ୟେକ ଗାଈ ୫ ମିନିଟ ମଧ୍ୟରେ ଦୁହାଁ ହୁଅନ୍ତି, ଏହା-ଛଡ଼ା ସେ ୧୦୦ ଟି ଘୁଷୁରି ଓ ୪୦୦ କୁକୁଡ଼ା ପାଳିଛନ୍ତି । ଅଣ୍ଡା, ଦୁଧ, ଲହୁଣୀ ଓ ଘୁଷୁରି ପ୍ରଭୃତି ବଜାରରେ ବିକି ସେ ପ୍ରଚୁର ଆୟ କରନ୍ତି ।

ତାଙ୍କର ସର୍ବମୋଟ ବାର୍ଷିକ ପ୍ରାୟ ୬୦ ହଜାରରୁ ୬୫ ହଜାର ଆୟ ହୁଏ । ସେଥିରୁ ଖର୍ଚ୍ଚବାର୍ଚ୍ଚ ଓ ଇନକମ୍ ଟାକ୍ସ ଯାଇ ୩୦।୩୫ ହଜାର ଟଙ୍କା ବଳେ ।

ସାଧାରଣତଃ ପ୍ରତ୍ୟେକ କୃଷକ ନିଜ ପାରିବାରିକ ଉଦ୍ୟମରେ କୃଷିକାର୍ଯ୍ୟ ପରିଚାଳନା କରନ୍ତି । ଛୋଟଠାରୁ ବଡ଼ ଯାକେ ଯାହାର ଯେତିକି ଶକ୍ତି, ସେ ଏଥିରେ ଖଟାଏ । ବାପ ପୁଅମାନଙ୍କ ସାହାଯ୍ୟରେ ବାହାର କାମ

# ଆପଣ ଜାଣିବାକୁ ଚାହାନ୍ତି

[୧ । ଗ୍ରାହକ ନମ୍ବର ନ ଦେଲେ ଉତ୍ତର ପାଇବେ ନାହିଁ । ଯେଉଁମାନେ ଏଜେଣ୍ଟଙ୍କଠାରୁ ନିୟମିତ ପତ୍ରିକା କିଣନ୍ତି, ସେମାନେ ଏଜେଣ୍ଟଙ୍କ ନାମସହ ପ୍ରଶ୍ନ ପଠାଇ ପାରିବେ ।

୨ । ଇଂରାଜୀ ମାସର ୨୦ ତାରିଖ ପୂର୍ବରୁ ପ୍ରଶ୍ନଗୁଡ଼ିକ ଆମର ହସ୍ତଗତ ହେବା ଆବଶ୍ୟକ ।

୩ । ଆପଣଙ୍କ ପ୍ରଶ୍ନର ଉତ୍ତର କାହିଁକି ଦିଆ ନ ଗଲା, ତାର କାରଣ ଦର୍ଶାଇବାକୁ ଆମେ ବାଧ୍ୟ ନୋହୁଁ ।

୪ । ପ୍ରଶ୍ନ ସଙ୍ଗେ ଅନ୍ୟ କିଛି ଲେଖିବେ ନାହିଁ ।]

୧ । ଅନନ୍ତନାଥ କରଣ, ନଡପୁର

ପ୍ର—ବାରବାଟୀ ଷ୍ଟାଡ଼ିୟମ କଣ ?

ଉ—ଷ୍ଟାଡ଼ିୟମ ଅର୍ଥ କ୍ରୀଡ଼ାମଞ୍ଚ । ପୂର୍ବେ ଗ୍ରୀସ୍‌ର Race-course କୁ ଷ୍ଟାଡ଼ିୟମ କୁହାଯାଉଥିଲା । ଆଧୁନିକ ଅର୍ଥରେ ଯେଉଁଠାରେ ବିଭିନ୍ନ କ୍ରୀଡ଼ା ପ୍ରତିଯୋଗିତା ହୁଏ ଏବଂ ଦର୍ଶକମାନେ ବସି ଦେଖନ୍ତି, ତାକୁ ବୁଝାଏ । ବଡ଼ ବଡ଼ ସହର ମାନଙ୍କରେ ଷ୍ଟାଡ଼ିୟମ ଥାଏ । କଟକରେ ନ ଥିବାରୁ କେତେକ ଉଦ୍ୟୋକ୍ତା ଗୋଟିଏ ଷ୍ଟାଡ଼ିୟମ ଗଢୁଛନ୍ତି । ସେଥିପାଇଁ ପ୍ରସିଦ୍ଧ ବାରବାଟୀ କିଲ୍ଲାରେ ପ୍ରଶସ୍ତ ପଡ଼ିଆରେ ଦର୍ଶକମାନଙ୍କ ପାଇଁ ଶ୍ରେଣୀବଦ୍ଧ ମଞ୍ଚ ନିର୍ମିତ ହେଉଛି । ଏଥିପାଇଁ ଯାହା ଅର୍ଥ ଆବଶ୍ୟକ ହେଉଛି, ତାହା ଲଟେରୀରୁ ସଂଗୃହୀତ ହେଉଅଛି ।

୨ । ପୂର୍ଣ୍ଣଚନ୍ଦ୍ର ରାଉତରାଏ, ରଙ୍ଗିଦାସପୁର

ପ୍ର—ଇଂଲଣ୍ଡ, ଆମେରିକା ପ୍ରଭୃତିରେ ବାସ କରୁଥିବା କୌଣସି ବନ୍ଧୁଙ୍କ ପାଖକୁ ଖଣ୍ଡେ ଚିଠି ପଠାଇଲେ ସ୍ଥାନୀୟ ଡାକଘରେ ପକାଇବ କି ନାହିଁ ? ଚିଠିରେ କିପରି ଠିକଣା ଲେଖାଯିବ ?

ଉ—ଠିକଣା ଯେମିତି ଲେଖାଯାଏ ସେହିପରି ଲେଖାଯିବ । ସ୍ଥାନୀୟ ଡାକଘରେ ମଧ୍ୟ ପକାଯିବ । ଚିଠିରେ କେବଳ ଅଧିକ ଡାକ ଟିକଟ ଲଗାଇବାକୁ ପଡ଼ିବ ।

୩ । ରମେଶ ପ୍ରସାଦ ସେନ, କୁହୁଡ଼ି

ପ୍ର—ମୌଳିକ ଶିକ୍ଷା କଣ ଓ ତାହାର ଉପାଦେୟତା କଣ ? ଏହି ବିଷୟରେ ଆପଣଙ୍କ ପତ୍ରିକାରେ ଗୋଟିଏ ପ୍ରବନ୍ଧ ଦିଅନ୍ତୁ ।

ଉ—ଭାରତର ବର୍ତ୍ତମାନ ଅବସ୍ଥାକୁ ଗୃହ ଏବଂ ଖାଦ୍ୟ, ବସ୍ତ୍ର ଓ ବେକାର ସମସ୍ୟା ଅତି ମୌଳିକ ସମସ୍ୟାର ସମାଧାନ ଦିଗରେ ଦୃଷ୍ଟି ରଖି ମହାତ୍ମା ଗାନ୍ଧି ପ୍ରଥମେ ଏହି ନୂତନ ଶିକ୍ଷା ପଦ୍ଧତିର ପରିକଳ୍ପନା କରିଥିଲେ । ବର୍ତ୍ତମାନ

( ୨୧ ପୃଷ୍ଠା ଦେଖନ୍ତୁ )

ବୁଟେ, ମା' ଝିଅମାନଙ୍କୁ ଘେନି ରୋଷେଇକାମ, ବଗିଚା ଓ କୁକୁଡ଼ା ମାନଙ୍କ ଯତ୍ନ ନିଏ । ସେମାନେ ଦୈନିକ ୮ ଘଣ୍ଟାରୁ ୧୦ ଘଣ୍ଟା ଯାଏ ପରିଶ୍ରମ କରନ୍ତି ମାତ୍ର ଫସଲ ବୁଣା ଓ ଅମଳ ସମୟରେ ୧୬ ଘଣ୍ଟା ଖଟିବାକୁ ପଡ଼ିଥାଏ ।

ଆମ୍ଭେମାନେ ସେଠାରେ ସକାଳୁ ଖିଆ ପିଆ ସାରି ଗାଈ ଦୁହିଁ, ବିହନ ବୁଣିବା, ଗାଈ ଓ କୁକୁଡ଼ାମାନଙ୍କୁ ଖୋଇବା, ଟ୍ରାକ୍ଟର ଚଳାଇବା, କୁଟା କାଟିବା ଓ ପଶୁମାନଙ୍କ ଖାଦ୍ୟ ପ୍ରସ୍ତୁତ କରିବାରେ ଲାଗିପଡୁ । କାମ ଦାମ ସାରି ଖେଳୁ ବା ଫଟୋ ଉଠାଉ ।

ସନ୍ଧ୍ୟାବେଳେ କ୍ଲବ୍‌କୁ ଯାଉ । ସାଇପଡ଼ିଶାଙ୍କୁ ଭେଟୁ, ସିନେମା ଦେଖୁ । ସପ୍ତାହ ଶେଷରେ ବଣଭୋଜି କରୁ । ପ୍ରତି ରବିବାର ସକାଳେ ଗୀର୍ଜାକୁ ଉପାସନା କରିବାକୁ ଯାଉ ।

ମୁଁ ସୋରେନସେନଙ୍କ ଘରେ ରହିବା ପୂର୍ବରୁ ମଟର ଚଳାଇ ଜାଣି ନ ଥିଲି ମାତ୍ର ଏକ ସପ୍ତାହ ମଧ୍ୟରେ ସେମାନେ ମୋତେ ତାହା ଶିଖାଇ ଦେଲେ ।

ଆମେରିକାର କୃଷକ ଦେହ ଓ ମନ ଲଗାଇ ପରିଶ୍ରମ କରେ । ହଜାର ହଜାର ଏକର ଜମିର ମାଲିକ ହୋଇ ସୁଦ୍ଧା ନିଜ କ୍ଷେତ ବାଡ଼ିରୁ ହାତେ ହାତେ ଘାସ ଉପାଡ଼ିବାକୁ ସେ ଲଜ୍ଜା ବା ସଙ୍କୋଚ ବୋଧ କରେ ନାହିଁ । କଠିନ ପରିଶ୍ରମ ତାର ଜୀବନର ମୂଳମନ୍ତ୍ର ଏବଂ ଏହି ଶ୍ରମର ମହତ୍ତ୍ୱ ହୃଦୟଙ୍ଗମ କରିପାରିଥିବାରୁ ସେ ଅଭାବ କଣ ତା ଜୀବନରେ ଜାଣିନାହିଁ ।"

# ଚିକିତ୍ସା-ମାହାତ୍ମ୍ୟ ( ବ୍ୟଙ୍ଗ ଅଭିନୟ )

## ୧ମ ଦୃଶ୍ୟ

[ଦୁଇଜଣ ଲୋକ ବାରଣ୍ଡାରେ ବସିଛନ୍ତି—କାର୍ଯ୍ୟଭ୍ରମ ବାବୁ ବିଷଣ୍ଣ ବଦନରେ ସେହିବାଟେ ଯାଉଥିବାବେଳେ ସାକ୍ଷାତ ଓ କଥୋପକଥନ ]

୧ମ ବ୍ୟକ୍ତି—କିଓ କାର୍ଯ୍ୟଭ୍ରମ ବାବୁ, ଆସ, ଆସ । ଏମିତି ଶୁଖିଲାଠାଏ କାହିଁକି ଦିଶୁଛ ? କଣ ହୋଇଛି କି ?

୨ୟ ବ୍ୟକ୍ତି—ହଁ ସତେତ, ଏତେ ଶୁଖିଲାଠାଏ କାହିଁକି ଦିଶୁଛ କିଓ କକା ? କଣ ଦେହ ପା' ଖରାପ ଅଛି ?

କାର୍ଯ୍ୟଭ୍ରମ—ନାହିଁ, ଦେହ ଖରାପ କଣ—ବିଶେଷ ସେମିତି କିଛି ନାହିଁ ।

୧ମ—ନାହିଁ ? ପାଚିଲା ବେଲପତ୍ର ଦେହଟା, ଶୁଖି କଳାକାଠ ପଡ଼ିଗଲଣି । କଣ ହୋଇଛି କହୁନା ।

୨ୟ—ନିଶ୍ଚେ କିଛି ହୋଇଛି ।

୧ମ—ହୋଇଛି ବୋଲି ହୋଇଛି—ଅଚ୍ଛା ରକମ ହୋଇଛି ନା । ଠିଆ ଠିଆ ହୋଇଛ କଣ ମ ? ବସୁନା । କହୁନା କଣ ହୋଇଛି । ରୋଗଟାକୁ ଲୁଚାଇଲେ କଣ ଲୁଚିବ ?

କାର୍ଯ୍ୟ—(ଅପ୍ରସ୍ତୁତ ହୋଇ) ନାହିଁ ମ, ରୋଗ କାହିଁ ? ସେମିତି ଟିକେ କଣ ଲୋକ ଚାଲୁ ଚାଲୁ ପଡ ଯାଉ ନାହାନ୍ତି ?

୨ୟ—ଏଁ, କଣ କହିଲ କକା ? ପଡ଼ିଲ, କଣ କହୁଛ ! କେଉଁଠି ? କେମିତି ପଡ଼ିଗଲ ? କିଏ ପକାଇ ଦେଲା ? କେତେବେଳେ ପଡ଼ିଲ ? କାହିଁକି ବା ପଡ଼ିଲ ? (କାର୍ଯ୍ୟଭ୍ରମଙ୍କ ହାତକୁ ଟାଣି) କହୁନା କାହିଁକି ?

କାର୍ଯ୍ୟ— (ବସି ପଡ଼ି) ଆରେ ବାପ ସେମିତି କିଛି ପଡା ନୁହେଁ ମ । ଗାଡ଼ିଟା ମୋ ପାଖରେ ସାଇଁକିନେ ଚାଲିଗଲା ଯେ ମୁଁ ଟିକିଏ ଭିତରକୁ ଅଡେଇ ଯାଉଁ ଯାଉଁ ଡ୍ରେନ ଭିତରକୁ ଗୋଡ ଖସିଗଲା ମାନ । ଜଖମ କିଛି ନାହିଁ ।

୧ମ—ଗୋଡ ଖସିଗଲା, ଜଖମ୍ ନାହିଁ ? ତୁମେ କେମିତି ଜାଣିଲ ?

କାର୍ଯ୍ୟ—ଜଖମ ଥିଲେ ଜଣା ପଡନ୍ତା ନାହିଁ ? (ଗୋଡ ହାତ ଛିଟି) ନାଇଁ, କାହିଁ ଲାଗୁ ତ ନାହିଁ ?

୨ୟ—ଏହିକ୍ଷଣି ପଡ଼ିଗଲ, ଏଇକ୍ଷଣି ଲାଗନ୍ତା ? ପଛକୁ ଦେଖିବ କେମିତି ଲାଗିବ । କାଲି ସକାଳୁ ତ ଗୋଡ ଉଠାଇ ପାରିବ ନାହିଁ । ଆଉ ଯଦି ଚିକିତ୍ସା ନ କର, ତେବେ ପାଞ୍ଚ ଦଶ ବର୍ଷ ପରେ ପକ୍ଷାଘାତ !

କାର୍ଯ୍ୟ—ଏଁ !

୧ମ—ଏଁ କଣ କହୁଛ ? ଦଶ ମିନିଟ ଭିତରେ ତ ଗୋଡ ଖଲେଇଲା ଭଳିଆ ଦିଶୁଛି । ଥଟ୍ଟା ନାହିଁ କାର୍ଯ୍ୟଭ୍ରମ-ବାବୁ । ଦେହମୁଣ୍ଡ କଥାରେ ଥଟ୍ଟା ନକର କଅଣ ? ଏମିତି ସାମାନ୍ୟ କଥାରୁ ତ ଧନୁଷ୍ଟଙ୍କାର, ସାନ୍ନିପାତ, କାମଳ, ଉରୁସ୍ତମ୍ଭ କେତେ କଅଣ ହୋଇ ଯାଉଛି ! କଷ୍ଟସ୍ୟ କଅଣ ହୋଇଛି ଭୁମ୍ଭର । ଶୀଘ୍ର ଯାଇ ଡାକ୍ତରଙ୍କୁ ଦେଖାଅ । ଦରକାର ହେଲେ ଏକ୍ସରେ (X-Ray) କର ।

୨ୟ—କକା, ପଇସା କଅଣ ସ୍ୱର୍ଗକୁ ନେବ କିଓ ? ଆଗ ଦେହ ନାଁ—

କାର୍ଯ୍ୟ—ହଁ, ଯାହା କହିଲ—(ମୋଡ଼ ଭଡ଼ ହୋଇ) ଟିକିଏ ଟିକିଏ କେମିତି କସ୍‌ମସ ଲାଗିଲାଣି ।

୧ମ—ଲାଗିଲାଣି ନା ଆହୁରି ଲାଗିବ ?

କାର୍ଯ୍ୟ—କଣ କରିବ ତେବେ ? ଡାକ୍ତରକୁ ପଚାରିବ ? ହଇଏ କାହା ପାଖକୁ ଗଲେ ଭଲ ହେବ ?

୨ୟ—କକା, ତୁମେ ଏ ସୁରେନ୍ଦ୍ର ପଟ୍ଟନାୟକ ଯେଉଁ ନୂଆ ଡାକ୍ତର ଆସିଛି, ତାରି ପାଖକୁ ଯାଅ । ସେଠି ଯଦି ଭଲ ନ ହେଲ, ଗୋପାଳବାବୁ ହୋମିଓପାଥ୍ ଅଛନ୍ତି ନଇଲେ ତାରିଣୀ କବିରାଜ ଅଛି । କିନ୍ତୁ ଡେରି କର ନା ।

କାର୍ଯ୍ୟ—ନାହିଁ, ଯିବି ତା ହେଲେ । ଟିକିଏ ବେଶୀ ଦରଜ ଲାଗିଲାଣି । ଆଗ ସେ ପଟ୍ଟନାୟକ ପାଖକୁ ଯାଏଁ ।

୧ମ—ଯାଉ, ଟଙ୍କା ଥୋଡ଼େ ଶ୍ରାଦ୍ଧ କରି ଆସୁ । ଆମର ଚାଲ ଗାଧୋଇ ଯିବା । (ପ୍ରସ୍ଥାନ)

## ୨ୟ ଦୃଶ୍ୟ

[ଡାକ୍ତର ପଟ୍ଟନାୟକଙ୍କ ଚିକିତ୍ସାଳୟ—କାର୍ଯ୍ୟଭ୍ରମଙ୍କର ପ୍ରବେଶ]

କାର୍ଯ୍ୟ—ଗୁଡ୍ ମର୍ଣିଂ ସାର୍ ।

ଡାକ୍ତର—Good morning. Well. What can I do for you ?

କାର୍ଯ୍ୟ—ଆଜ୍ଞା, ବଡ ବିପଦରେ ପଡ଼ି ଆପଣଙ୍କ ପାଖକୁ ଆସିଛି । କାଲି ଉପରବେଳା ଡ୍ରେନରେ ପଡ଼ଯାଇ—

ଡା—( ସହସା ଚମକି ଉଠିଲା ପରି ହୋଇ ) ଓଃ—dislocation ? Compound fracture ? ହାଡ଼ ଭାଙ୍ଗିଛି ?

କାଧୂ—ମୁଁ କେମିତି ଜାଣିଲି ?

ଡା—ଦେହରେ ଦରଜ ଅଛି ?

କାଧୂ—(ହାତଗୋଡ଼ ହଲାଇ) ନା ।

ଡା—ପେଟ କିଛି ଖରାପ ଅଛି ?

କାଧୂ—ନା, ଖାଡ଼ା ସଫା ହୋଇଛି ।

ଡା—ସର୍ଦ୍ଦି ଅଛି ?

କାଧୂ—ଏହାକ୍ଷଣି ନାହିଁ । ତେବେ ମାସେଖଣ୍ଡେ ତଳେ—

ଡା—ଅଚ୍ଛା ଅଚ୍ଛା, ହୋଇଛି । ଆଉ କ ରକମ ବୋଧ କରୁଛନ୍ତି ? ସଫାକରି ସବୁ କହନ୍ତୁ ତ ।

କାଧୂ—କାଲିଠାରୁ ଗୋଟାଏ ଜିନିଷ ଜମିଛି—ଆଜି ରାତିରେ ଯେଉଁ ସ୍ୱପ୍ନ ଦେଖିଛି ସାର୍; ସେ କଥା ଅପଣଙ୍କୁ କିଏ କହିବ ?

ଡା—That's all right—ଅଚ୍ଛା, ଅପଣଙ୍କୁ ଥରେ examine କରେଁ । ବସନ୍ତୁ ତ ଏଇ ଚେୟାର୍‌ରେ । ଜିଭ ଦେଖି— (magnifying glass ରେ ପରୀକ୍ଷା କରି) ଅପଣ ଜିଭ ଟାଣିନେଇ ପାରନ୍ତି । ଏଥର ଅପଣଙ୍କ Pulse ଟା ଦେଖେଁ—(ପରୀକ୍ଷା କରି) 15, 20, 30, 45, 55, 60,—ହେଲା । ଏଥର ଅପଣ ହାତ ପକାଇ ପାରନ୍ତି । ଅଚ୍ଛା, ଅପଣ ଟିକିଏ ସିଧା ଚାହାନ୍ତୁ ତ । Look straight—(କାଧୂଙ୍କ ଘାଡରେ ପ୍ରଥମେ ହାତରେ ଟିପାମାରି ତାପରେ ହାଣ୍ଡୁଡ଼ିରେ ଟିପିବା ) ।

କାଧୂ—ବାପାରେ—ଇରେ ବାବା ।

ଡା—ଅସ୍ଥିର ହେବେ ନାହିଁ । ଏ ସବୁ ଅମର Latest Science—(ପେଟରେ ଷ୍ଟେଥସ୍‌କୋପ୍ ଲଗାଇ)—ଏଇଥର ଟିକିଏ ହସନ୍ତୁ ଦେଖିତ ।

କାଧୂ—ହସ ନ ମାଡିଲେ ହସିବି କେମିତି ସାର୍ ?

ଡା—ଅଚ୍ଛା, ଅପଣଙ୍କୁ କୁତୁ କୁତୁ ଲାଗେ ? Are you ticklish ? (କୁତୁ କୁତୁ କରିବା) ।

କାଧୂ—ହାଃ-ହାଃ-ହାଃ, ହାତ ଯୋଡୁଛି ସାର୍; କୁତୁକୁତୁ କରନ୍ତୁ ନାହିଁ ।

ଡା—That's all right— ( କପାଳରେ ଷ୍ଟେଥସ୍‌କୋପ ଲଗାଇ ) ଏଥର ଆଖି ବୁଜନ୍ତୁ । କଅଣ ଭାବୁଛନ୍ତି ?

କାଧୂ—କାଲି ରାତିର ସେଇ ସ୍ୱପ୍ନ କଥା ।

ଡା—Hang your dream—ସେ ସବୁ ଭୁଲି ଯାନ୍ତୁ । ଅପଣ ଭାବନ୍ତୁ ଯେ ଅପଣ ଅଗାଧ ଜଳରେ ବୁଡ଼ି ଯାଉଛନ୍ତି ।

କାଧୂ—(ଆଖିବୁଜି) ସର୍ବନାଶ !

ଡା—ଅପଣଙ୍କ ଆଖି, କାନ, ନାକ ବାଟେ ପାଣି ପଶି ଯାଉଛି ।

କାଧୂ—କାହିଁ ନାହିଁ ତ ?

ଡା—Hopeless ! ଅପଣ ତାଇ ଭାବନ୍ତୁ ଖାଲି ।

କାଧୂ—ହଉ, ଅଚ୍ଛା ।

ଡା—ଧରନ୍ତୁ (ରୋଗୀ ଷ୍ଟେଥସ୍ କୋପ ଧରିବା; ଡାକ୍ତର ଗଣିବା ଓ ଘଣ୍ଟା ଦେଖିବା) All right.

କାଧୂ—ଅବସ୍ଥାଟା କି ରକମ ଦେଖିଲେ ?

ଡା—Very bad—Very serious.

କାଧୂ—ଯେଁ, ବଞ୍ଚିବିକି ?

ଡା—ଅମେ ଯଥାସାଧ୍ୟ ଚେଷ୍ଟା କରିବା ।

କାଧୂ—ମୋର କଣ ହୋଇଛି ? ରୋଗଟା କଣ ?

ଡା—ଅଉ ଦନାକେତେ watch ନ କଲେ ଠିକ୍ କହି ପାରିବ ନାହିଁ । ତେବେ ସନ୍ଦେହ କରୁଛି, Cerebral tumour with strangulated Ganglia—trephine ଦ୍ୱାରା ମୁଣ୍ଡର ଖପୁରି କଣା କରି ଅସ୍ତ୍ର କରିବାକୁ ହେବ । ଛଅ ଶିରା nerve ର ଜଟ ଛଡ଼ାଇବାକୁ ହେବ । Short circuit ହୋଇ ଯାଇଛି କିନା—ଏହାଛଡ଼ା Concussion of the Thyroid Gland ବି ହୋଇ ଥାଇ ପାରେ । Operation ନ କଲେ ଜଣା ପଡ଼ିବ ନାହିଁ । ଜାଣନ୍ତି ତ latest theory ?

କାଧୂ—ମରିଯିବି ନାହିଁ ତ sir ?

ଡା—ଡରିବେ ନାହିଁ—ତା ଦ୍ୱାରା heart fail ର ଅଶଙ୍କା । Come to me after seven days—ମୋର ଜଣେ friend ଅଛନ୍ତି, Specialist in surgery—ତାଙ୍କ ସଙ୍ଗେ consult କରିବାକୁ ହେବ । Dr. Choudhury ଙ୍କ laboratory ରେ ଅପଣଙ୍କ blood, stool ଏବଂ urine examine କରାଯିବ । ଅପଣଙ୍କର ଛେପ, ଲୁହ ଏବଂ ଦେହର ମଇଳା Chemical analysis କରାଯିବ । ଏ ସବୁ ଅମର latest theory—Yes

(୧୩ ପୃଷ୍ଠାର ଅବଶିଷ୍ଟାଂଶ)

## ଟାଇଫଏଡ୍‌ର ନୂଆ ଔଷଧ

'ସିନେମାଇସିନ୍' ନାମକ ଏକ ନୂଆ ଔଷଧ ଯୁକ୍ତରାଷ୍ଟ୍ର ଆମେରିକାରେ ୫ ବର୍ଷର ପରୀକ୍ଷା ପରେ ପ୍ରସ୍ତୁତ ହୋଇଛି । ଏହା ଟାଇଫଏଡ୍ ରୋଗରେ ପ୍ରୟୋଗ କରାଯିବ । ଏପରି ଫଳପ୍ରଦ ଔଷଧ ପୂର୍ବରୁ ଆବିଷ୍କୃତ ହୋଇ ନ ଥିଲା ବୋଲି କୁହା ଯାଉଛି ।

## ସୂର୍ଯ୍ୟ-ଷ୍ଟୋଭ୍ (Sun-stove)

ନିଉୟର୍କ ବିଶ୍ୱବିଦ୍ୟାଳୟର ଗବେଷଣା ବିଭାଗର ଜଣେ ମହିଳା ମେରିଆ ଟେଲ୍କସ ଗୋଟିଏ ସୂର୍ଯ୍ୟ-ଷ୍ଟୋଭ୍ ଆବିଷ୍କାର କରିଛନ୍ତି । ଭାରତରେ ସୂର୍ଯ୍ୟଚୁଲ୍ଲି (Sun-Cooker) ନିର୍ମିତ ହୋଇ ବ୍ୟବହୃତ ହେଉଥିବା କଥା ସେ ଜାଣନ୍ତି । କିନ୍ତୁ ତାଙ୍କ ଷ୍ଟୋଭ୍ ଶସ୍ତା ଓ ସରଳ ପଦ୍ଧତିରେ ତିଆରି ହୋଇଥିବା ଯୋଗୁ ସେ ଆଶା କରନ୍ତି ଏହା ଗ୍ରୀଷ୍ମପ୍ରଧାନ ଦେଶମାନଙ୍କରେ ବହୁଳ ବ୍ୟବହୃତ ହେବ । ଏହି ଷ୍ଟୋଭରେ ଗୋଟିଏ କାଚ ଝରକା ଅଛି । ଏହି ଝରକା ବାଟେ ସୂର୍ଯ୍ୟରଶ୍ମି ଭିତରେ ପଶି ୪ଟି ଦର୍ପଣରେ ପ୍ରତିଫଳିତ ହୋଇ ଗୋଟିଏ ରାସାୟନିକ ପଦାର୍ଥ ଉପରେ ପତିତ ହୁଏ । ଏହି ପଦାର୍ଥଟି ସମସ୍ତ ଉତ୍ତାପ ଗ୍ରହଣ କରି ଅଧଘଣ୍ଟା ଭିତରେ ୩୫୦ ଡିଗ୍ରୀ ତାପ ଜାତ କରେ । କ୍ରମେ ଅଧିକ ସୂର୍ଯ୍ୟ କିରଣ ଷ୍ଟୋଭ ଭିତରେ ପ୍ରବେଶ କରି ତାପକୁ ବଢ଼ାଏ । ଏହାକୁ ତିଆରି କରିବା ପାଇଁ ପ୍ରାୟ ୧୦ ଟଙ୍କାର ଜିନିଷ ଦରକାର ହେଉଛି । ତେଣୁ ଡକ୍ଟର ଟେଲ୍କସ ଆଶା କରନ୍ତି, ଅଧିକ ସଂଖ୍ୟାରେ ତିଆରି ହେଲେ ଏହା ୨୫ ଟଙ୍କାରୁ କମ୍ ମୂଲ୍ୟରେ ବିକି କରାଯାଇ ପାରିବ ।

## ରଙ୍ଗୀନ୍ ଏକ୍ସ-ରେ ଚିତ୍ର

କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଇଲେକ୍‌ଟ୍ରିକାଲ ଇଞ୍ଜିନିୟରିଂ ବିଭାଗର ସହକାରୀ ଅଧ୍ୟାପକ ଗୋଟିଏ ନୂତନ ପ୍ରଣାଳୀ ଉଦ୍ଭାବନ କରିଛନ୍ତି । ଏହା ସାହାଯ୍ୟରେ ବିଭିନ୍ନ ରଙ୍ଗରେ ଏକ୍ସ-ରେ ଚିତ୍ର ପ୍ରସ୍ତୁତ ହୋଇ ପାରୁଛି ଏବଂ ଯେଉଁ ଅଂଶର ଫଟୋ ନିଆ ଯାଉଛି ତାର ଅବିକଳ ପ୍ରତିଛବି ଦେଖିବାର ସୁବିଧା ମିଳୁଛି ।

## ଡକାୟତି ବିରୁଦ୍ଧରେ ନୂତନ କଗାଳି ଯନ୍ତ୍ର

ଜର୍ମାନୀର ଜଣେ ବୈଜ୍ଞାନିକ କଲିକତାରେ ଗୋଟିଏ ନୂଆ ଚୋର ଘଉଡ଼ାଇବା ଯନ୍ତ୍ର ଉଦ୍ଭାବନ କରିଛନ୍ତି । ଏ ମେସିନ୍ ରହିବା ଫଳରେ ଚୋରମାନେ ହଠାତ୍ ଘରେ ପଶି ପାରନ୍ତି ନାହିଁ ।

## 'ରାଇନୋ'

ଆମେରିକାରେ ଇଣ୍ଡିଆନାପୋଲିସ୍ ନିକଟସ୍ଥ ଗୋଟିଏ ତୀଖ ପର୍ବତ ଅନ୍ୱେଷଣ କରିବା ପାଇଁ ଗୋଟିଏ ନୂତନ ଗାଡ଼ି ତିଆରି ହୋଇଛି । ଏହା ସନ୍ତସନ୍ତିଆ ସ୍ଥାନରେ ପେଣ୍ଡୁ ପରି ଗଡ଼ି ଚାଲିଯିବ, କାଦୁଅ ଓ ବାଲିରେ ମଧ୍ୟ ଯାଇପାରିବ ଏବଂ ସାଧାରଣ ରାସ୍ତାରେ ଘଣ୍ଟାରେ ୪୫ ମାଇଲ ଗତିରେ ଯାଇପାରିବ । ଏହାର ଚକଗୁଡ଼ିକ ଆଲୁମିନିୟମରେ ତିଆରି ଓ ଗୋଟିଏ ବଡ଼ ପେଣ୍ଡୁର ଅର୍ଦ୍ଧପରି ଦେଖାଯାଏ । ଏହା ଉପରକୁ ଉଠିବା ସମୟରେ ୭୫ ଡିଗ୍ରୀ କୋଣ କରି ସୁଦ୍ଧା ପଡ଼ିଯାଏ ନାହିଁ । ରାସ୍ତାରେ ଯିବା ସମୟରେ 'ରାଇନୋ'ର ଚକର ଧାରରେ ରବର ଦିଆଯାଏ । ଜଳରେ ଯିବା ସମୟରେ ଏହା ଘଣ୍ଟାରେ ୫ ମାଇଲ ଗତିରେ ଯାଏ ।

—o—

your diet; ଅଣ୍ଡା, bone-marrow, chicken syrup ଏ ସବୁ ଖାଇବେ । ବରଫ ସର୍ବତ, ice-cream ଖୁବ୍ ଖାଇ ପାରନ୍ତି । ଆଉ ଦେଖିବା ଦରକାର ହେଲେ ମୋର ଏଇ 250c.c. injection (ସିରିଞ୍ଜ ଦେଖାଇ)—

ବନ୍ଧୁ—ଅରେ ବାବା !

ଡା—ଇଞ୍ଜେକ୍‌ସନକୁ ଡରିବେ ନାହିଁ । ଏ ସବୁ ଆମର latest theory (କାଗଜରେ କିଛି ସମୟ ଲେଖି)—ନିଅନ୍ତୁ ଆପଣଙ୍କର Prescription. Rs, 64/-

ବନ୍ଧୁ—(ଟଙ୍କା ଗଣି ଡାକ୍ତରଙ୍କ ହାତକୁ ବଢ଼ାଇ ଦେବା)

ଡା—(ଟଙ୍କା ନେଇ) Thank you. (ପ୍ରସ୍ଥାନ)

ବନ୍ଧୁ—ଇରେ ବାପ୍‌ରେ ଡାକ୍ତର— ଏଠି ପଟିବ ନାହିଁ । ଅନ୍ୟତ୍ର ଦେଖିବା । ଗୋପାଳବାବୁ ହୋମିଓପାଥ୍‌ଙ୍କ କଥା ସେମାନେ କହୁଥିଲେ । ସେଠାକୁ ଯିବା ଦେଖି ।

( ଗୋଟିଏ ବଙ୍ଗଳା ଅଭିନୟର ଛାୟାରେ—କ୍ରମଶଃ )

(୧୭ ପୃଷ୍ଠାର ଅବଶିଷ୍ଟାଂଶ)

ଭାରତ ସରକାର ଓ ବିଭିନ୍ନ ରାଜ୍ୟ ସରକାରମାନେ ମୌଳିକ ଶିକ୍ଷାର ପ୍ରସାର ନିମିତ୍ତ ଯତ୍ନ କରୁଅଛନ୍ତି ।

ଏହି ଶିକ୍ଷା ପଦ୍ଧତିର ବିଶେଷତ୍ୱ ଏହି ଯେ, ଏହି ବ୍ୟବସ୍ଥାରେ କୌଣସି ମୌଳିକ ଧନ୍ଦା ବା ଲାଭଜନକ ବ୍ୟବସାୟ ସାହାଯ୍ୟରେ ଓ ମାତୃଭାଷା ମାଧ୍ୟମରେ ଶିକ୍ଷା ଦିଆଯାଏ । ସ୍ୱାବଲମ୍ବନଶୀଳତା ଏହି ପଦ୍ଧତିର ପ୍ରଧାନ ଲକ୍ଷ୍ୟ । ୭ ବର୍ଷରୁ ୧୪ ବର୍ଷ ବୟସ୍କ ଛାତ୍ରଛାତ୍ରୀମାନଙ୍କୁ ଅବୈତନିକ ଓ ବାଧ୍ୟତାମୂଳକ ଶିକ୍ଷା ଦିଆଯିବାର ବ୍ୟବସ୍ଥା ଏଥିରେ ଅଛି ।

ମୌଳିକ ଶିକ୍ଷାର ୩ ଟି ସ୍ତର ବା ବିଭାଗ :—

୧—ପ୍ରାଗ୍ ମୌଳିକ—୩ ବର୍ଷରୁ ୭ ବର୍ଷ ପର୍ଯ୍ୟନ୍ତ ।

୨—ମୌଳିକ—୭ ବର୍ଷରୁ ୧୪ ବର୍ଷ ।

୩—ଉତ୍ତର ମୌଳିକ—୧୪ ବର୍ଷରୁ ୧୭/୧୮ ବର୍ଷ ପର୍ଯ୍ୟନ୍ତ ।

ଏ ସମ୍ପର୍କରେ ବିଶଦ ଆଲୋଚନା ଏଠାରେ ସମ୍ଭବ ନୁହେଁ । ପ୍ରବନ୍ଧ ଯଥା ସମୟରେ ପ୍ରକାଶ ପାଇବ ।

୪ । ଗ୍ରା ନଂ ୧୪୪୫

ପ୍ର—ଭାରତର ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀ ଉଭୟଙ୍କ ମଧ୍ୟରେ କିଏ ବେଶୀ କ୍ଷମତାପନ୍ନ ଓ କିପରି ? ଏବଂ ସେମାନେ କାହାଦ୍ୱାରା ନିର୍ବାଚିତ ?

ଉ—ରାଷ୍ଟ୍ରପତି— ଭାରତର ସର୍ବୋଚ୍ଚ ଶାସନକର୍ତ୍ତା । ଆମେରିକାର ପ୍ରେସିଡେଣ୍ଟଙ୍କ ଭଳି ଦେଶରକ୍ଷା ବାହିନୀର ସର୍ବୋଚ୍ଚ ଅଧିନାୟକ । ସେ ଭାରତର ପ୍ରଧାନମନ୍ତ୍ରୀଙ୍କୁ ନିଯୁକ୍ତ କରିବେ । ପାର୍ଲାମେଣ୍ଟରେ ଗୃହୀତ ହେବା ବିଲ୍‌ଗୁଡ଼ିକ ରାଷ୍ଟ୍ରପତିଙ୍କ ସମ୍ମତି ଲାଭ କଲେ ଦେଶରେ ଆଇନ ରୂପେ ପ୍ରଚଳିତ ହୋଇ ପାରିବ । ପାର୍ଲାମେଣ୍ଟର ଉଭୟ ସଭାର ନିର୍ବାଚିତ ସଭ୍ୟ ଏବଂ ରାଜ୍ୟ ବ୍ୟବସ୍ଥାପକ ସଭାର ନିର୍ବାଚିତ ସଭ୍ୟମାନଙ୍କ ଦ୍ୱାରା ମିଳିତ ଭାବରେ ରାଷ୍ଟ୍ରପତି ନିର୍ବାଚିତ ହେବେ ।

ପ୍ରଧାନ ମନ୍ତ୍ରୀ— ସେ ଲୋକସଭାର ସଂଖ୍ୟାଗରିଷ୍ଠ ଦଳର ଦଳପତି ଏବଂ ରାଷ୍ଟ୍ରପତିଙ୍କ ଦ୍ୱାରା ନିଯୁକ୍ତ ହେବେ । ବିଲାତର ପ୍ରଧାନମନ୍ତ୍ରୀଙ୍କ ଭଳି ତାଙ୍କର ଦାୟିତ୍ୱ ଖୁବ୍ ଅଧିକ । ବୁଝିବାକୁ ଗଲେ ସେ ଦେଶର ସମସ୍ତ ପ୍ରଧାନ ନୀତି ନିର୍ଣ୍ଣୟ କରିବେ ।

ଭାରତର ସଂବିଧାନ ଯେପରି ପ୍ରଣୟନ କରାଯାଇଛି, ସେଥିରେ ଭାରତର ରାଷ୍ଟ୍ରପତି ବିଲାତର ରାଜାଙ୍କ ପରି ନାମମାତ୍ର ଅଲଙ୍କାରିକ ଶାସନ ମୁଖ୍ୟ ନୁହନ୍ତି କି ଆମେରିକାର ପ୍ରେସିଡେଣ୍ଟଙ୍କ ଭଳି ସର୍ବେସର୍ବା କିମ୍ବା ବ୍ୟାପକ କ୍ଷମତାର ଅଧିକାରୀ ନୁହନ୍ତି । କାର୍ଯ୍ୟତଃ ପ୍ରଧାନ ମନ୍ତ୍ରୀ ଶାସନ କାର୍ଯ୍ୟର ସମସ୍ତ ଦାୟିତ୍ୱ ତୁଲାଉଥିଲେହେଁ ଆଇନତଃ ରାଷ୍ଟ୍ରପତି ସର୍ବୋଚ୍ଚ ଆସନର ଅଧିକାରୀ ।

୫ । ଅନରାରୀ ସେକ୍ରେଟାରୀ, ଷ୍ଟାର ଲାଇବ୍ରେରୀ

ପ୍ର—ପୃଥିବୀର ବୃହତ୍ତମ ଫୁଲର ନାମ କଣ ଓ ତାର ଆକାର କେତେ ବଡ଼ ?

ଉ—ଦକ୍ଷିଣ ଆମେରିକାର ବ୍ରିଟିଶ ଗାଏନାର 'ଭିକ୍ଟୋରିଆ ରେଜିଆ' ନାମକ କଇଁଫୁଲର ପରିଧି ୩ ଫୁଟ । ଆଉ ଏକ ଓଲ୍ଡ଼ଅ ଜାତିର ଫୁଲ ଉଚ୍ଚ ୬ଫୁଟ ହୁଏ—ନାମ—ଆମୋରଫୋଫେଲସଟାଇଟାନମ୍ ।

୬ । ଗିରିକିଶୋର ମହାନ୍ତି, ବାରିପଦା

ପ୍ର—Printing Technology ବିଷୟରେ କେଉଁ କେଉଁ ସ୍ଥାନରେ ଶିକ୍ଷା ମିଳିବାର ସୁବିଧା ଅଛି ? ସେଥିପାଇଁ କି ଯୋଗ୍ୟତା ଆବଶ୍ୟକ ?

ଉ—ମାନ୍ଦ୍ରାଜରେ ଡିପ୍ଲୋମା କୋର୍ସ ୨ଟି ଅନୁଷ୍ଠାନରେ ଅଛି । (୧) Central Polytechnic, ଯୋଗ୍ୟତା—S. S. L.C. ପାଠ ସମୟ ୩ ବର୍ଷ । (୨) Government School of Technology,' Broadway, Madras, ୪ ବର୍ଷ ପଢ଼ିବାକୁ ହୁଏ ।

ବାଙ୍ଗାଲୋରର J.O. Institute ରେ ମଧ୍ୟ ଡିପ୍ଲୋମା କୋର୍ସ ଅଛି । ପାଠ ସମୟ-୩ ବର୍ଷ । ଯୋଗ୍ୟତା—S.S. L. C. ; ୨ ବର୍ଷ ପଢ଼ିଲେ କେବଳ ସାର୍ଟିଫିକେଟ ମିଳେ ।

ଏହାଛଡ଼ା ଦିଲ୍ଲୀରେ ଗୋଟିଏ ଆଧୁନିକ ଧରଣର Printing School ଖୋଲିବା ପାଇଁ ଭାରତ ସରକାର ଆୟୋଜନ କରୁଛନ୍ତି ।

—୦—

# ଶାସ୍ତ୍ରୀ କାହାଣୀ?

ଲେ—ବାୟୁ

ବିଲାତ ଶ୍ରମିକ ଦଳର ନେତା ମିଃ ଅଟ୍‌ଲି ଚୀନ ଓ ଦୂର ପ୍ରାଚ୍ୟ ଭ୍ରମଣ ଶେଷ କରି ଅଷ୍ଟ୍ରେଲିଆର କାନବେରା-ଠାରେ ଏକ ଭୋଜି ସଭାରେ କହିଲେ, "ମୋର ବିଶ୍ୱାସ, ଏସିଆ ଖଣ୍ଡରେ ଏପରି ଏକ ଆନ୍ଦୋଳନ ଆଗେଇ ଚାଲିଛି, ଯାହାକୁ କୌଣସି ମାନବିକ ଶକ୍ତି ଦମନ କରି ପାରିବ ନାହିଁ ।"

କିନ୍ତୁ ଆଣବିକ ଶକ୍ତି ?

× × ×

ସେପ୍‌ଟେମ୍ବର ୧୩ ତାରିଖ ଦିନ କାଲିଫର୍ଣ୍ଣିଆର ଏକ ଅନୁଷ୍ଠାନ ତରଫରୁ ସୋଭିଏଟ ସରକାରଙ୍କ ସର୍ବୋଚ୍ଚ କର୍ତ୍ତା ମାଲେନକୋଭ ଓ ତାଙ୍କର ୧୬ ଜଣ ଉଚ୍ଚପଦସ୍ଥ ସହକର୍ମୀଙ୍କ ପାଖକୁ ଜରୁରୀ ବ୍ୟୋମଡାକ (air express) ଯୋଗେ ୧୭ଟି ଧଳା ଗୋଲାପ ପଠାଯାଇଛି । ପାଶ୍ଚାତ୍ୟ ଜଗତର ଶାନ୍ତିକାମନାର ବାର୍ତ୍ତା ନେଇ ଏହି ଗୋଲାପ ଫୁଲଗୁଡ଼ିକ ଆମେରିକାରୁ ରୁଷିଆ ଯିବା ସଙ୍ଗେ ସଙ୍ଗେ ଏଣେ ଆମେରିକା ତିଆରି ବୋମାବର୍ଷୀ ବିମାନ-ଜରିଆରେ ଚୀନର ମୂଳଭୂଖଣ୍ଡ ଉପରେ ଫରମୋଜା ସରକାର ବୋମା ପକାଇବା ଆରମ୍ଭ କରିଦେଇଛନ୍ତି ।

ଗୋଟିଏ ହାତରେ ଧଳା ଗୋଲାପ, ଆର ହାତରେ କଳା ବୋମା । କେବଳ ଯୋଗସୂତ୍ର କବର ଥିଲେ ଦୁହେଁ ଦୁଇପାଖେ ଫୁଟିଥିବେ ।

× × ×

ଭାରତ ସରକାରଙ୍କ ନୂଆ ସଂଶୋଧିତ ଚାକିରୀ ନିୟମାବଳୀରେ ଅଛି ସରକାରୀ ଚାକିରିଆମାନେ ଦୁଇଟି ସ୍ତ୍ରୀ ବିବାହ କରିପାରିବେ ନାହିଁ ( ଅର୍ଥାତ୍ ଗୋଟିଏରୁ ଅଧିକ୍ ନୁହେଁ ) ।

ସ୍ତ୍ରୀମାନଙ୍କପାଇଁ ନିୟମ 'ହୋଇଛି "ସେମାନେ ଗୋଟିଏ ସୁଦ୍ଧା ସ୍ୱାମୀ ବିବାହ କରିପାରିବେ ନାହିଁ" ( ଅର୍ଥାତ୍ ଅବିବାହିତ ରହିବେ । )

'ପୁରୁଷ ସଙ୍ଗେ ନାରୀର ସମାନ ଅଧିକାର'—ନୀତି ଆଉ ରହିଲା କେଉଁଠି ?

× × ×

ମିସେସ୍ ରୁଜ୍‌ଭେଲଟ୍ କେତେକ ଦିନତଳେ ଭାରତ ଭ୍ରମଣରେ ଆସିଥିଲେ । ସେ ତାଙ୍କ ଭ୍ରମଣ ବୃତ୍ତାନ୍ତ ଲିପି-ବଦ୍ଧ କରି ଖଣ୍ଡିଏ ବହି ଲେଖିଛନ୍ତି । ସେଥିରେ ସେ ଠାଏ ଲେଖିଛନ୍ତି "ଭାରତରେ ପହିଁରି (ଝାଡୁ) ବେଣ୍ଟଠାରୁ ମନୁଷ୍ୟମାନେ ଶସ୍ତା ।"

କୌଣସି ସହରରେ ମଟରରେ ବସି ଯାଉଥିଲା-ବେଳେ ସେ କେତେକ ଲୋକଙ୍କୁ ନଇଁ ନଇଁ ରାସ୍ତା ଓଳାଉଥିବାର ଦେଖିଥିଲେ । ତାଙ୍କର ଧାରଣା ହେଲା, ଅଣ୍ଟା ଭାଙ୍ଗି ଜୀବନ ନଷ୍ଟ କରିବେ ପଛକେ, ଭାରତୀୟ-ମାନେ ଝାଡୁରେ ଲମ୍ବା ବେଣ୍ଟ ଲଗାଇବେ ନାହିଁ । ଏଣୁ ଗାଣିତିକ ସୂତ୍ର ପ୍ରୟୋଗ କରି ସେ ଉପରୋକ୍ତ ମନ୍ତବ୍ୟ ପ୍ରକାଶ କରିଛନ୍ତି ।

ଆଖି ପିଛୁଳାକେ ଲକ୍ଷ ଲକ୍ଷ ଲୋକଙ୍କ ଜୀବନ ନଷ୍ଟ କରିଦେବାପାଇଁ ଯେଉଁ ଦେଶରେ ଅହରହ ଆୟୋଜନ ଚାଲିଛି, ସେ ଦେଶ ଲୋକଙ୍କ ମୁହଁରେ ମନୁଷ୍ୟ ଜୀବନ ଶସ୍ତା କି ମହରଗ ଏ ବିଷୟରେ ମନ୍ତବ୍ୟ ଶୋଭାପାଏ ନାହିଁ ।

× × ×

ଏବେ ଗୋଟାଏ ନୂଆ ଫେସନ ବାହାରିଛି ଯେ ବିଭିନ୍ନ ଦେଶର ଜନନାୟକମାନେ ଭେଟାଭେଟି ହୋଇ ପରସ୍ପର ମଧ୍ୟରେ ଭାବର ଆଦାନପ୍ରଦାନ କରୁଛନ୍ତି । ଆସନ୍ତା ମାସ ମଧ୍ୟରେ ସେହିପରି ଗୋଟିଏ ଜବର ଭେଟା-ଭେଟିର ଆୟୋଜନ ହେଉଛି । ନେହେରୁ ଚୀନ ଯିବେ, ସେଠାରେ ଚୁଉ-ଏନ୍-ଲାଇ ଓ ମାଲେନକୋଭଙ୍କୁ ଭେଟିବେ । ମାର୍ଶାଲ୍ ଟିଟୋ ଭାରତ ଆସିବାର ଅଛି । ସେତେବେଳେ ବି ଗୋଟାଏ ଭେଟାଭେଟି ହେବ ।

ପଣ୍ଡିତ ନେହେରୁ ଅଛନ୍ତି ବୋଲି ରକ୍ଷା । ନଇଲେ କେହି କେହି କହନ୍ତେ—ଏ ଦୋସ୍ତି ନୁହେଁ ଯେ କୁସ୍ତିର ଆୟୋଜନ ହେଉଛି !'

× × ×

ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରରୁ ମୂଲ୍ୟବାନ ଅଳଙ୍କାର-ମାନ ଯାଇ ମାରଓ୍ୟାଡ଼ି ଘରେ ବନ୍ଧା ପଡ଼ୁଛି ବୋଲି ଆସେମ୍ବ୍ଲି ଆଲୋଚନାବେଳେ ଜଣାପଡ଼ିଲା । ଅଭ କେତେକ ଅଳଙ୍କାର ବହୁଦିନ ମରାମତି ହେବାକୁ ଯାଇ କୁଆଡ଼େ ଏପର୍ଯ୍ୟନ୍ତ ଦେଉଳକୁ ଫେରିନାହିଁ ।

ପୁରୀଙ୍କା ଜଣେ ନରଦେହଧାରୀ ଦେବତା । ମାରଓ୍ୟାଡ଼ିଙ୍କ ସିନ୍ଦୁକଭିତରେ ଲକ୍ଷ୍ମୀଠାକୁରାଣୀ ଅଛନ୍ତି । ସୁତରାଂ ଆତଙ୍କିତ ହେବାର କିଛି କାରଣ ନାହିଁ । ଏ ସବୁ ଦେବଦେବୀମାନଙ୍କ ମଧ୍ୟରେ ଭାବ-ବନ୍ଧନମୟ ଓ ଅଭାବ-ବନ୍ଧନମୟ ।

---

# ସ୍ନେହ ଓ ଶାସନ

ଶ୍ରୀ ବଭୂତି ଭୂଷଣ ପଟ୍ଟନାୟକ

ପାଦ ନ ଥୋଉଣୁ ପଢ଼ାଇବାକୁ ମୁଁ ଘରେ
ଟୁକୁର ଜନନୀ ଅଭିଯୋଗ କଲେ ଆସି,
"ଦେଖିବଟି ମାଷ୍ଟ୍ରେ କେଡ଼େ ଅମାନିଆ ପିଲା
ସକାଳ ପହରୁ ନଖାଇ ବସିଛି ରୁଷି,

ଏକାଜିଦ ତାର ପିନ୍ଧିବ ସେ ନୂଆ ଲୁଗା
ଯେତେ ବୁଝାଇଲେ ଶୁଣୁନି ମୋଟେ ମୋକଥା
ପିଠିକୁ ତାହାର ଦିଅନ୍ତୁ ବେତରେ ଘାଇ
ରୁଷିବାର ଫଳ ଭୋଗୁ ସେ ମିଠା କି ପିତା ।"

ସବୁକଥା ଶୁଣି ଡାକିଲି ଟୁକୁକୁ ରାଗେ
ପାଖରେ ଆସି ମୋ ଠିଆହେଲା ଭୟେ ଡରି
ଗାଲଦେଇ ତଳେ ଲୁଆଇଲାକ୍ଷଣି ବେତ
ଦଉଡ଼ି ଆସିଲେ ମା' ତାର ପାଟିକରି ।

"ହାଁ.. ହାଁ...ମାଷ୍ଟ୍ରେ ମାରିବକି ତାକୁ ସତେ
ଯେତେହେଲେ ସିଏ ଛୋଟପିଲାଟିଏ ପରା,"
ଏହା କହି ତାକୁ ନେଲେ ସ୍ନେହେ କୋଳକରି
ନୟନୁ ତାଙ୍କର ବହିଗଲା ଲୁହଧାର ।

ହତବାକ୍ ହୋଇ ରହିଁ ରହିଲି ମୁଁ ଖାଲି
ଅଜଣାରେ ହାତୁ ପଡ଼ିଲା ବେତଟା ଖସି ।
ମାଷ୍ଟର ହୋଇ ମୁଁ ମାଆର ସେନେହ କେତେ
ବୁଝିବାକୁ ଖାଲି ଚେଷ୍ଟା କରୁଥିଲି ବସି !!!

# ଆଶାୟୀ

ଶ୍ରୀ ମହେଶ୍ୱର ପଣ୍ଡା

ଦିବସ ଗଣିଭିରି ଲଭିଲି କେତେ ନିଶି,
ସୁଖ-ସମ୍ପଦ-ବୋଳା ଅମିୟମଖା ହାସ;
ହୃଦୟ-ପ୍ରେମ-ଖେତେ ଫୀରିଡ-ଫୁଲ କେତେ,
ପୁଲକ-ଫସଲର ମହକ ମଧୁବାସ ।

କଣ୍ଠେ ଦୋଳାଇଲି ଜୟପଦ-ମାଳ,
ଅଙ୍ଗେ ବାସ ଶୁଣି ନୟନ-ମନ-ଜଣା,
ମଥାରେ ସମ୍ମାନ, ଗର୍ବ ଅଭିମାନ,
ଗଉରବର ଦାନ ଦେଶ-ବିଦେଶ-ଘେନା !

ଗୃହିଁଲି ଯେତେ ଯେତେ କାମନା-ମୋହଗତେ
ପୂର୍ଣ୍ଣ ହେଲା ତା'ତ ଏପରି ନିତି ନିତି,
ତଥାପି ହୃଦ କୋଣେ ଆଶାର ବୀଜ ବୁଣେ,
ଅବଶୋଷ ଛୁରିକା ଆଘାତ ନିତ ଘାତି ।

ଯେତିକି ମାଉଗୁଲେ, ଆଶା ତ ବଢ଼ିଗୁଲେ
ତେତିକି ହୃଦ-କୂଳ ଲଙ୍ଘି ଦିନୁଦିନ,
ପାରୁନି' ଜାଣି ଆଜ କାହା ପରଶ ବାଜ
ପୂର୍ଣ୍ଣ ହେବ ତାହା, କେଉଁ ମିଳନ-ଦିନ ?

ସାଗରେ ମିଶି ଯେସ୍ନେ ସରିତ ଭୁଲେ ସବୁ
ପ୍ରାଣର ଅବଶୋଷ ଆଶା ଭରସା ରାଜ,
ତେସନ କା'ର ସାଥେ 'ଆତ୍ମା' ସୁପ୍ରଭାତେ
ପୂର୍ଣ୍ଣତା ଲଭିବ; ଗୃହିଁଛି ସବୁ ତେଜ ।

---

# ସ୍ୱାମୀ ଶିବାନନ୍ଦ ସରସ୍ୱତୀ

ସ୍ୱାମୀ ରାମପ୍ରେମୀ

**ଜନ୍ମ**—ଦକ୍ଷିଣ ଭାରତରେ ତିରୁନେଲ ଭେଲି ଜଂକସନର ପ୍ରାୟ ୧୦ ମାଇଲ ପଶ୍ଚିମକୁ ପଟ୍ଟାମଦାଇ ନାମରେ ଏକ ଗ୍ରାମ ଅବସ୍ଥିତ । ଗ୍ରାମର ଏକ ପାର୍ଶ୍ୱରେ ସ୍ୱଚ୍ଛ-ସଲିଳା ତାମ୍ରପର୍ଣ୍ଣୀ ନଦୀ କଳ କଳ ନାଦରେ ପ୍ରବାହିତ । ଏହା ଦକ୍ଷିଣ ଭାରତରେ ଏକ ପବିତ୍ର ଏବଂ ପ୍ରସିଦ୍ଧ ନଦୀ ଅଟେ । ଏହାକୁ "ଦକ୍ଷିଣର ଗଙ୍ଗା" ମଧ୍ୟ ବୋଲଯାଏ । ଏହି ପବିତ୍ର ନଦୀ କୂଳରେ, ମନୋହର ଆବେଷ୍ଟନୀ ମଧ୍ୟରେ ପ୍ରାକୃତିକ ସୌନ୍ଦର୍ଯ୍ୟ ପୂର୍ଣ୍ଣ ପଟ୍ଟାମଦାଇ ଗ୍ରାମରେ ୧୮୮୭ ମସିହା ସେପ୍ଟେମ୍ବର ୮ ତାରିଖ ଗୁରୁବାର ପ୍ରାତଃ ୪ ଟା ୧୭ ମିନିଟ ସମୟରେ ଯେଉଁ ଶିଶୁ ଦିବସର ପ୍ରଥମ ଆଲୋକ ଦର୍ଶନ କରିଥିଲେ ଆତ୍ମୀୟ ସ୍ୱଜନ ତାଙ୍କର ନାମ ଦେଇ-ଥିଲେ କୁପୁସ୍ୱାମୀ । ବାଳକ କୁପୁସ୍ୱାମୀ ପରେ ଡାକ୍ତର ପିଃ ବିଃ କୁପୁସ୍ୱାମୀ ଅୟ୍ୟର ନାମରେ ଖ୍ୟାତି ଲାଭ କରି ବୟସର ଅଗ୍ରଗତିରେ ସନ୍ନ୍ୟାସାଶ୍ରମ ଗ୍ରହଣ କରି ସ୍ୱାମୀ ଶିବାନନ୍ଦ ସରସ୍ୱତୀ ନାମରେ ଜଗତରେ ପରିଚିତ ହେଲେ ।

**ପିତାମାତା**--ପିତା ପିଃ ଏସ୍ ବେଙ୍ଗୁ ଅୟ୍ୟର ଇଟାୟାପୁରମ୍ ରାଜ୍ୟର ତହସିଲଦାର ଥିଲେ । ତାଙ୍କର ସଚ୍ଚରିତ୍ରତା, ସାଧୁତା, ସୌଜନ୍ୟ ଏବଂ ଅସାଧାରଣ ପାଣ୍ଡିତ୍ୟ ଯୋଗୁଁ ତିରୁନେଲ ଭେଲି ଜିଲ୍ଲାରେ ସର୍ବତ୍ର ସେ ଆଦୃତ ଏବଂ ସମ୍ମାନିତ ହୋଇ ପାରିଥିଲେ । ମାତା ଶ୍ରୀମତୀ ପାର୍ବତୀ ଅତ୍ୟନ୍ତ ଧର୍ମପରାୟଣା, ପତିବ୍ରତା ଏବଂ ଭକ୍ତିମତୀ ଥିଲେ । ପ୍ରତିଷ୍ଠିତ, ନୈଷ୍ଠିକ ବ୍ରାହ୍ମଣ ପରିବାରରେ ଭଗଭକ୍ତି ବିରାଜମାନ ଥିଲା ।

**ବାଲ୍ୟକାଳ ଓ ଶିକ୍ଷା**— ମାତାପିତାଙ୍କର ଆଦର୍ଶ ଅନୁକରଣରେ କୁପୁସ୍ୱାମୀଙ୍କ ଜୀବନ ବିକଶିତ ହେବାକୁ ଲାଗିଲା । ବାଲ୍ୟକାଳରୁ ସୁସଂସ୍କାର ତାଙ୍କ ମନ ଉପରେ ଆଧିପତ୍ୟ ବିସ୍ତାର କରିଥିଲା । ତାଙ୍କର ବୁଦ୍ଧି ବିଚକ୍ଷଣ ଥିଲା, ପ୍ରତିଭା ପ୍ରଖର ଥିଲା । ଶିକ୍ଷାପ୍ରତି ତାଙ୍କର ତୀବ୍ର ଅଭିଲାଷ ଥିଲା । ଜ୍ଞାନଲାଭ ପାଇଁ ଅଦମ୍ୟ କ୍ଷୁଧା ଥିଲା ଓ ତା' ସହ ଥିଲା ହୃଷ୍ଟପୁଷ୍ଟ ସୁଢ଼ଳ ସୁଗଠିତ ସ୍ୱାସ୍ଥ୍ୟ । ପ୍ରତ୍ୟେକ କ୍ଷେତ୍ରରେ ଅଗ୍ରଣୀ ହୋଇ ସେ ନିଜର ବହୁମୁଖୀ ପ୍ରତିଭା ଦ୍ୱାରା ସହପାଠୀ, ଛାତ୍ର ଏବଂ ଅଧ୍ୟାପକମାନଙ୍କର ପ୍ରେମର ପାତ୍ର ହୋଇ ପାରିଥିଲେ । ୧୯୦୩ ରେ ଇଟାୟାପୁରମ୍ ରାଜା ସ୍କୁଲରୁ ମେଟ୍ରିକ ଶିକ୍ଷା ସମାପନ କରି ଉଚ୍ଚ ଶିକ୍ଷା ପାଇଁ ତ୍ରିଚନାପଲ୍ଲୀର ଏସ୍. ପି. ଜି କଲେଜରେ ପଦାର୍ପଣ କଲେ ।

**ଡାକ୍ତରୀ ଶିକ୍ଷା :**—୧୯୦୫ ରେ ଇଣ୍ଟର ଆର୍ଟସ୍ ପରୀକ୍ଷାରେ ଦକ୍ଷତାର ସହିତ ପାଶ୍ କରିବା ପରେ ଡାକ୍ତରୀ ପଢିବାର ଆକାଙ୍କ୍ଷା ତାଙ୍କ ମନରେ ଜାଗ୍ରତ ହୋଇଥିଲା । ବୋଧହୁଏ ଲୁକ୍‌କାୟିତ ସେବା ଭାବର ବୀଜ ଅଙ୍କୁରିତ ହେବାର ମାର୍ଗ ଖୋଜୁଥିଲା । ଜନତା ଜନାର୍ଦ୍ଦନର ସେବା ପାଇଁ ଡାକ୍ତରୀ ବିଦ୍ୟା ଯେ ଏକ ଉନ୍ମୁକ୍ତ, ପ୍ରଶସ୍ତ ଏବଂ ସୁଗମ ମାର୍ଗ ତାହା ହୃଦୟଙ୍ଗମ କରି ସେ କର୍ମକ୍ଷେତ୍ରକୁ ଡେଇଁ ପଡିଲେ । ଶ୍ରଦ୍ଧା ଏବଂ ଅଧ୍ୟବସାୟ ଫଳରେ ଔଷଧ ଏବଂ ଶଲ୍ୟ ଚିକିତ୍ସା ଉଭୟରେ ନିପୁଣତା ଲାଭ କରି କୁପୁସ୍ୱାମୀ ଡାକ୍ତର କୁପୁସ୍ୱାମୀ ଅୟ୍ୟର ଏମ୍. ବି. ବି, ଏସ୍ ନାମରେ ପ୍ରସିଦ୍ଧ ହେଲେ ।

**ବହୁମୁଖୀ ପ୍ରତିଭା :**—ଡାକ୍ତର କୁପୁସ୍ୱାମୀ ଜଣେ ସୁଦକ୍ଷ ଟାଇପିଷ୍ଟ, ଯୋଗ୍ୟ ଲେଖକ ଏବଂ ପ୍ରବୀଣ ପତ୍ରକାର ମଧ୍ୟ ଥିଲେ । ସଂଗୀତ ରଚନାର କଳା ତ ଛାତ୍ରାବସ୍ଥାରୁ ଥିଲା । କଣ୍ଠ ମଧ୍ୟ ଖୁବ୍ ମଧୁର ଥିଲା । ପ୍ରଥମେ ଡାକ୍ତର ତ୍ରିଚନାପଲ୍ଲୀରେହିଁ ଚିକିତ୍ସା କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । ଜନ-ସ୍ୱାସ୍ଥ୍ୟର ସୁରକ୍ଷା ପାଇଁ "The Ambrosea" ଏମ୍ବ୍ରୋସିଆ ନାମରେ ସେ ଏକ ଡାକ୍ତରୀ ମାସିକ ପତ୍ର ସମ୍ପାଦନ ଏବଂ ପ୍ରକାଶ କରିଥିଲେ ।

ତ୍ରିଚନାପଲ୍ଲୀରେ ଅବସ୍ଥାନ କାଳରେ ଡାଃ କୁପୁସ୍ୱାମୀ କେତେକ ଡାକ୍ତରୀ ପୁସ୍ତକ ମଧ୍ୟ ଲେଖିଥିଲେ । ଊର୍ଦ୍ଧ୍ୱାଙ୍ଗ ଚିକିତ୍ସା ବିଶେଷତଃ ନେତ୍ର ସମ୍ବନ୍ଧୀୟ ରୋଗଗୁଡିକରେ ଡାକ୍ତର କୁପୁସ୍ୱାମୀ ସିଦ୍ଧହସ୍ତ ଥିଲେ ।

**ମାଲୟ ଯାତ୍ରା**— ୧୯୧୩ ମସିହାରେ ଯେତେ-ବେଳେ ଡାଃ କୁପୁସ୍ୱାମୀ ମାଲୟରେ ପହଞ୍ଚିଲେ ସେତେ-ବେଳେ ତାଙ୍କର ବୟସ ୨୫ ବର୍ଷ ମାତ୍ର । ଏହି ଅଳ୍ପ ବୟସରେ ମଧ୍ୟ ଡାକ୍ତର କୁପୁସ୍ୱାମୀ 'ନେଗ୍ରୀନେମ୍ବିଲନ' ନାମକ ସ୍ଥାନରେ ଏକ ପ୍ରସିଦ୍ଧ ହସପାତାଳରେ ସାତବର୍ଷ ପର୍ଯ୍ୟନ୍ତ ପ୍ରଧାନ ଚିକିତ୍ସକ ରୂପେ କାର୍ଯ୍ୟ କଲେ । ନିଜର



୧ । ଗୋପାଳ ତା ବାପାଙ୍କ ପାଖକୁ ଏହିପରି ଖଣ୍ଡେ ଚିଠି ଲେଖିଥିଲା—"ଗତ କାଲି ମୁଁ ବଡ଼ ଡାକ୍ତରଖାନା ପାଖଠୁଁ ୩ ମାଇଲ ଦୂରରେ ଏକ ଗୁରୁତର ଦୁର୍ଘଟଣାରେ ମୋର ଗୋଟିଏ ଅଙ୍ଗର ହାଡ଼ ଭାଙ୍ଗି ଯାଇଛି । ନିକଟରେ କୌଣସି ଗାଡ଼ି ନ ଥିବାରୁ ମୋତେ ଚାଲି ଚାଲି ଆସିବାକୁ ପଡ଼ିଲା । ମୁଁ ବର୍ତ୍ତମାନ ଡାକ୍ତରଖାନାରେ…"

ଗୋପାଳର କେଉଁ ଅଙ୍ଗ ଗୁରୁତର ଜଖମ ହୋଇଛି ବୋଲି ଅନୁମାନ କରୁଛ ?

୨ । ପିଲାଙ୍କ ପାଠପଢ଼ା ପ୍ରତି ଉଚିତ ଦୃଷ୍ଟି ନ ଦେଲେ ସେମାନେ (୧) ମୂର୍ଖ ହୁଅନ୍ତି । (୨) ଅମଣିଷ ହୁଅନ୍ତି । (୩) ନିର୍ବୁଦ୍ଧିଆ ହୁଅନ୍ତି । (୪) ଅଧା ପାଠୁଆ ହୁଅନ୍ତି । କେଉଁଟି ବେଶୀ ଠିକ୍ ?

୩ । ନିମ୍ନ ସଂଖ୍ୟା ଗୁଡ଼ିକରେ ଯେଉଁ କ୍ରମ ଅଛି ତାକୁ ରକ୍ଷା କରି ଶୂନ୍ୟସ୍ଥାନ ପୂରଣ କର :—

କ) ୧, ୪, ୨, ୬, ୩, ୭, —, ୮

ଖ) ୨, ୬, ୧୧, ୧୭, —

ଗ) ୮୧, ୨୭, ୯, ୩, —

୪ । କେତୋଟି ଦେବତାଙ୍କ ନାମର ମଝି ଅକ୍ଷରଗୁଡ଼ିକ ଲିଭିଯାଇଛି । ତୁମେ ସେମାନଙ୍କ ନାମ କହି ପାରିବ ?

(କ) କ— — —ତୀ (ଖ) ମା— —କ୍ଷୀ

(ଗ) କୁ — — ଆ

୫ । ତଳେ କେତୋଟି ଶବ୍ଦର ଅକ୍ଷର ଗୁଡ଼ିକ ଓଲଟ ପାଲଟ ହୋଇ ରହିଛି—ସେଗୁଡ଼ିକୁ ସଜାଡ଼ି ପଢ଼ ।

(କ) ଲକଫୁରୁଖା (ଖ) ତୁଲବାଛ (ଗ) ବାଟମଦାନା (ଘ) ହଇମଲତା (ଉତ୍ତର ୩୨ ପୃଷ୍ଠାରେ ଦେଖନ୍ତୁ)

---

ଯୋଗ୍ୟତା ଓ କାର୍ଯ୍ୟନିପୁଣତା ଯୋଗୁଁ ସେ ମାଳୟରେ ସମସ୍ତଙ୍କର ପ୍ରିୟପାତ୍ର ହୋଇ ପଡ଼ିଲେ । ଯଶ ଓ ଧନ ଉଭୟ ତାଙ୍କ ଚରଣ ତଳେ ଲୁଟିବାକୁ ଲାଗିଲା ।

ମାନବ ହୋଇ ମାନବଜାତିକୁ ପ୍ରେମ କରିବା ଡାକ୍ତରଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ନିଜର ଶାରୀରିକ ଆରାମ ବା ଶାନ୍ତି ପ୍ରତି ଦୃଷ୍ଟି ନ ଦେଇ ଡାକ୍ତର ଗରିବ ଓ ଅସହାୟ ରୋଗୀର ସେବାରେ ଅତ୍ୟଧିକ ଆନନ୍ଦ ଅନୁଭବ କରୁଥିଲେ । ରୋଗୀର ବିଛଣା ପାଖରେ ବସି ସେବା କରୁ କରୁ ରାତି ରାତି ବିତିଯିବା ଥିଲା ତାଙ୍କ ପକ୍ଷରେ ଏକ ମାମୁଲିକଥା ।

ଏକାନ୍ତ ସେବା ପାଇଁ ତାଙ୍କର ପ୍ରାଣ ବ୍ୟାକୁଳ ହୋଇ ଉଠିଲା । ଜଗତ ମାୟାପୂର୍ଣ୍ଣ ପ୍ରତୀତ ହେଲା । ପାର୍ଥିବ ଜୀବନ ନାନା ପ୍ରକାର ଦୋଷ ଏବଂ ଦୁଃଖଯୁକ୍ତ ପ୍ରତୀୟମାନ ହେଲା । ଆତ୍ମ ସାକ୍ଷାତ୍କାର ପାଇଁ ନିତ୍ୟସୁଖ ଓ ଶାଶ୍ୱତାନନ୍ଦଧାମର ଦର୍ଶନ ପାଇଁ ତୃଷ୍ଣା, ଭୟ, କ୍ଲେଶ, ପ୍ରତାରଣା ବର୍ଜିତ ମଧୁମୟ ବ୍ରହ୍ମଲୋକର ଅନୁସନ୍ଧାନ ପାଇଁ ଓ ଦିବ୍ୟ-ଜୀବନ ଲାଭ ପାଇଁ ଆତ୍ମପ୍ରେରଣା ବାଧ କଲା ।

ଅଭାବ ତାଙ୍କର ଥିଲା ବା କଣ ? ପ୍ରୟୋଜନାତିରିକ୍ତ ଧନ ଥିଲା, ସୌଷ୍ଠବ ସୁନ୍ଦର ସ୍ୱାସ୍ଥ୍ୟ ଥିଲା, ସ୍ୱଚ୍ଛନ୍ଦ ଓ ଅନୁକୂଳ ବାତାବରଣ ଥିଲା ଓ ଥିଲା ପ୍ରତିଷ୍ଠିତ ଆକର୍ଷଣୀୟ ବ୍ୟକ୍ତିତ୍ୱ । କିନ୍ତୁ ସଂସ୍କାର ଖୁବ୍ ପ୍ରବଳ ଥିଲା । ଏକାନ୍ତ ସଙ୍ଗୀତର ମୂର୍ଚ୍ଛନା ହୃଦୟରେ ଗୁଞ୍ଜିତ ହେବାକୁ ଲାଗିଲା । ବୈରାଗ୍ୟାଗ୍ନି ଅନ୍ତଃସ୍ଥଳରେ ପ୍ରଦୀପ୍ତ ହୋଇ ସାରିଥିଲା ।

( କ୍ରମଶଃ )

## ବିଶ୍ୱାସ କର ବା ନ କର

୧ । ପାକିସ୍ଥାନର ପଶ୍ଚିମ ପଞ୍ଜାବ ଅନ୍ତର୍ଗତ ଭଲ୍‌ୱାଲ୍ ସହରରେ ବର୍ତ୍ତମାନ ପ୍ରାୟ ଭିକାରି ନାହାନ୍ତି । ଭିକାରିଙ୍କ ଉପରେ ମାସକୁ ଟ°୬ କରି ଟାକ୍ସ ବସା-ଯାଇଛି । ଏ ବାବଦରେ ଟ୨°୯ ଆଦାୟ ହୋଇଛି । କ୍ୱଚିତ୍ ଜଣେ ଅଧେ ଭିକ ମାଗୁଥିବାର ଦେଖାଯାଉଛି ।

୨ । ଇଂଲଣ୍ଡର ମିଃ ଜେରଫିଲ୍‌ଗାଲ୍‌ଡ ଏକ ବିଷାକ୍ତ ଔଷଧ ଖାଇ ଆତ୍ମହତ୍ୟା କଲେ । ୧୯୪୬ରେ ଗୋଟିଏ ଉଡ଼ାଜାହାଜ ଦୁର୍ଘଟଣାରେ ତାଙ୍କର ମେରୁହାଡ଼ ବ୍ୟତୀତ ସମସ୍ତ ହାଡ଼ ଭାଙ୍ଗି ଯାଇଥିଲା । ତା ପରଠାରୁ ସେ ୩୮ ଥର ଅପରେସନ ହୋଇଛନ୍ତି ଏବଂ କେତେ ସପ୍ତାହ ହେଲା ପ୍ରତ୍ୟହ ନିଦ ଲାଗିବା ପାଇଁ ଇଂଜେକ୍‌ସନ ନେଉଥିଲେ ।

୩ । ଆମେରିକାରେ ଦାଢି ରଖିବା ଦିନେ ଦଣ୍ଡନୀୟ ଅପରାଧ ଥିଲା ।

୪ । 'ବୋଲ୍‌ଡର ଡାମ୍' ଯେତେ ଜଳ ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ କରେ ଗୋଟିଏ ନୂଆ ରକେଟ ଇଂଜିନ୍ ତା ଅପେକ୍ଷା ବେଶୀ ଅଶ୍ୱଶକ୍ତି ଜାତ କରିପାରୁଛି ।

—୦—

# ରେଡ଼ିଓ ରିସିଭର୍

ଶ୍ରୀ ବିଭୂତି ଭୂଷଣ ମହାନ୍ତି, ଏମ୍.ଏସ୍-ସି

ଯୁଗ ଆଗେଇ ଚାଲିଛି । ପଚିଶ କି ତିରିଶ ବର୍ଷ ଆଗେ ଲୋକେ ରେଡ଼ିଓ ଦେଖିବା ପାଇଁ ଅଧୈର୍ଯ୍ୟ ହୋଇ ଛୁଟି ହେଉଥିଲେ । ଶବ୍ଦ କିପରି ଓ କେଉଁଠୁ ଆସୁଛି, ଏହି ବିଷୟ ସେମାନଙ୍କର ସରଳ ମନକୁ ଆଲୋଡ଼ିତ କରୁଥିଲା । କିନ୍ତୁ ବିଜ୍ଞାନର ଦିନକୁ ଦିନ ଯେଉଁ ଅଗ୍ରଗତି ହେଉଛି, ସେଥିରେ ଆମେ ପଛରେ ରହିବା ଅସମ୍ଭବ । ଆଜି ପ୍ରାୟ ଗାଁମାନଙ୍କରେ ମଧ୍ୟ ବେତାର ଯନ୍ତ୍ର ଦେଖିବାକୁ ମିଳିପାରିବ । ଗତ ଯୁଦ୍ଧ ପରେ ପରେ ଏହି ବେତାର ଯନ୍ତ୍ର ବା ରେଡ଼ିଓ ରିସିଭର୍‌ର ପ୍ରଚଳନ ବହୁତ ବେଶୀ ହୋଇଯାଇଛି ଏବଂ ଭବିଷ୍ୟତରେ ଏହାର ପ୍ରସାର ଆହୁରି ବେଶୀ ହେବା ସୁନିଶ୍ଚିତ । ଯେଉଁ ବେତାରଯନ୍ତ୍ରଟି ଆମ ପାଖରେ ଥାଇ କଲିକତା, ବମ୍ବେ, ଦିଲ୍ଲୀ, ସିଲୋନ୍, ବି.ବି.ସି ପ୍ରଭୃତି ସୁଦୂର ବେତାର କେନ୍ଦ୍ରମାନଙ୍କରୁ ଆଣିଦିଏ ମନଭୁଲା ସଂଗୀତର ମୂର୍ଚ୍ଛନା, ତାହା ସମ୍ବନ୍ଧରେ କିଛି ଆଲୋଚନା କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

'ସମ୍ଭାର'ର ଜୁଲାଇ ଓ ଅଗଷ୍ଟ ମାସର ସଂଖ୍ୟା ଦୁଇଟିରେ ପ୍ରକାଶିତ 'ବେତାର ତରଙ୍ଗ' ଓ 'ରେଡ଼ିଓ ଟ୍ରାନ୍ସ୍‌ମିଟର' ଶୀର୍ଷକ ଦୁଇଟି ପ୍ରବନ୍ଧ ପ୍ରତି ଦୃଷ୍ଟି ଦେଲେ ବେତାର ତରଙ୍ଗ ଆକାଶମାର୍ଗରେ କିପରି ଗତି କରେ ବୁଝାଯିବ । ବେତାରତରଙ୍ଗ ଯେତେବେଳେ ଟ୍ରାନ୍ସ୍‌ମିଟିଂ ଷ୍ଟେସନର ଏରିଆଲ୍‌ରୁ ତାର ଗତି ଆରମ୍ଭ କରେ, ସେତେବେଳେ ସେ କେବଳ ଆୟୋନୋସ୍ଫିଅର୍‌ର ବିଭିନ୍ନ ସ୍ତରମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥାଏ । ମିଡିଅମ୍ ୱେଭରେ ପରିଚାଳିତ ବେତାର ଷ୍ଟେସନ୍‌ମାନଙ୍କରୁ ଆସୁଥିବା ବେତାର ତରଙ୍ଗମାନ ପୃଥିବୀ ପୃଷ୍ଠର ନିକଟତମ ମଣ୍ଡଳରେ ଗତି କରନ୍ତି । ଏହାକୁ ଗ୍ରାଉଣ୍ଡ ୱେଭ୍ କୁହାଯାଏ । ବିଭିନ୍ନ ସ୍ତର ମଧ୍ୟ ଦେଇ ଯେତେବେଳେ ଏହି ଶକ୍ତିଶାଳୀ ତରଙ୍ଗ ସବୁ ଗତି କରନ୍ତି, ସେମାନଙ୍କୁ ପୁଣି ଆଣିବାକୁ ହୁଏ ଆମର ରେଡ଼ିଓ ରିସିଭର୍ ନିକଟକୁ, କାରଣ 'ରେଡ଼ିଓ ରିସିଭର୍' ଯଦି ସେହି ତରଙ୍ଗଗୁଡ଼ିକୁ ଧରି ନ ପାରେ, ତାହାହେଲେ ଆମ୍ଭେମାନେ ଭଲଭାବରେ ଶବ୍ଦ ଶୁଣି ପାରିବା ନାହିଁ । ଟ୍ରାନ୍ସ୍‌ମିଟିଂ ଷ୍ଟେସନ୍‌ର ଏରିଆଲ୍ ଏହି ତରଙ୍ଗଗୁଡ଼ିକୁ ଛାଡ଼େ ଆକାଶ ମାର୍ଗକୁ ଏବଂ ଏହା ଯୁକ୍ତିଯୁକ୍ତ ଯେ ସେହି ତରଙ୍ଗଗୁଡ଼ିକୁ 'ରେଡ଼ିଓ ରିସିଭର୍' ନିକଟକୁ ଆଣିବାକୁ ହେଲେ ଗୋଟିଏ ଏରିଆଲ ଆବଶ୍ୟକ ହୁଏ । ଯେଉଁମାନଙ୍କର ରେଡ଼ିଓ ଥିବ ସେମାନେ ଏହି ଏରିଆଲ ଦେଖିଥିବେ । ପଠାଇବା ଯନ୍ତ୍ର ବା ଟ୍ରାନ୍ସ୍‌ମିଟରର ଏରିଆଲ୍ ପରି ଏହି ଶୁଣିବା ଯନ୍ତ୍ର ବା ରେଡ଼ିଓ ରିସିଭର୍‌ର ଏରିଆଲ ମଧ୍ୟ ହେବା ଉଚିତ । କିନ୍ତୁ ସାଧାରଣତଃ ଗୋଟିଏ ଲମ୍ବା ତାର ଦୁଇଟି ଉଚ୍ଚ ବାଉଁଶ ମଧ୍ୟରେ ବାନ୍ଧି ଦିଆଯାଏ ଏବଂ ସେଠାରୁ ରେଡ଼ିଓ ରିସିଭର୍‌ର ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନକୁ ତାର ସଂଯୋଗ କରାଯାଇଥାଏ । ଏହି ଧରଣର ଏରିଆଲ ମଧ୍ୟ ସନ୍ତୋଷଜନକ କାମ ଦିଏ । କିନ୍ତୁ ଦୂରବର୍ତ୍ତୀ ଷ୍ଟେସନ୍‌ମାନଙ୍କର ପ୍ରୋଗ୍ରାମ୍ ଶୁଣିବାକୁ ହେଲେ ଉନ୍ନତ ଧରଣର ଏରିଆଲ୍ ଆବଶ୍ୟକ ହୁଏ । ପୋଲିସ୍, ମିଲିଟାରି ଓ ଉଡ଼ାଜାହାଜମାନଙ୍କର ପଠାଇବା ଓ ଶୁଣିବା ଯନ୍ତ୍ରରେ ନିର୍ଦ୍ଦିଷ୍ଟ ଧରଣର ଏରିଆଲ୍ ସବୁ ଥାଏ ।

ଏରିଆଲ ଆକାଶମାର୍ଗରେ ଗତି କରୁଥିବା ବେତାର ତରଙ୍ଗକୁ ଧରିଆଣି ରେଡ଼ିଓ ରିସିଭର୍‌ରେ ପ୍ରବେଶ କରାଏ । ବେତାର ତରଙ୍ଗ ରେଡ଼ିଓ ରିସିଭରକୁ ଆସିଲେ ବୈଦ୍ୟୁତିକ ତରଙ୍ଗ ଆକାରରେ ପ୍ରବାହିତ ହୁଏ ଏବଂ ଏହାକୁ ରେଡ଼ିଓ ଫ୍ରିକ୍ୱେନ୍‌ସି କରେଣ୍ଟ୍ କୁହାଯାଏ । ଏହି ପ୍ରବାହିତ ତରଙ୍ଗକୁ ରେଡ଼ିଓ ରିସିଭର ମଧ୍ୟରେ ବଢ଼ାଇ ଦିଆଯାଏ ଏବଂ ଏଥିଲାଗି ଗୋଟିଏ ସ୍ୱତନ୍ତ୍ର ବ୍ୟବସ୍ଥା ଥାଏ । ଏଠାରେ ଏକ ପ୍ରଶ୍ନ ଉଠିପାରେ ଯେ ନିର୍ଦ୍ଦିଷ୍ଟ ବେତାର ଷ୍ଟେସନର ତରଙ୍ଗକୁ ଏରିଆଲ୍ ଆମର ଇଚ୍ଛାନୁଯାୟୀ କିପରି ଧରେ ? ପ୍ରତ୍ୟେକ ରେଡ଼ିଓ ରିସିଭର୍‌ର 'ଡାଏଲ' ଦେଖିଲେ ଗୋଟିଏ ମିଟର୍ ବା କଣ୍ଟା ଥିବାର ଦେଖାଯିବ । ଡାଏଲ୍ ଉପରେ ପୃଥିବୀର ବିଭିନ୍ନ ଷ୍ଟେସନର ନାମ ଓ ସେସବୁ ଷ୍ଟେସନରୁ ପ୍ରସାରିତ ହେଉଥିବା ତରଙ୍ଗର ଲମ୍ବ ଦିଆଯାଇଥାଏ । ସେହି ମିଟର୍‌କୁ

ଇଚ୍ଛାନୁସାରେ 'ଡାଏଲ୍'ରେ ଲେଖାଯାଇଥିବା ଯେ କୌଣସି ଷ୍ଟେସନର ନାମ ଉପରେ ରଖି ଦିଆଯାଇପାରେ। ରେଡିଓ ରିସିଭରର ଏରିଅଲ୍‌ଟି 'ଏରିଅଲ୍ ଟିଉନିଂ ସର୍କିଟ୍' ସଙ୍ଗେ ସଂଯୁକ୍ତ ହୋଇଥାଏ। ଯେତେବେଳେ ଡାଏଲ୍ ଉପରେ ମିଟର୍‌କୁ କଲିକତା ଉପରେ ରଖିଦିଆଯାଏ, ସେତେବେଳେ ଏହି 'ଏରିଅଲ୍ ଟିଉନିଂ ସର୍କିଟ୍' ନିଜକୁ କେବଳ କଲିକତାରୁ ପ୍ରଚାରିତ ହେଉଥିବା ନିର୍ଦ୍ଦିଷ୍ଟ ଲମ୍ବର ତରଙ୍ଗଟିକୁ ଧରିବାକୁ ପ୍ରସ୍ତୁତ ହୋଇଥାଏ। ଏହିପରିଭାବରେ ଡାଏଲ୍‌ରେ ମିଟର୍ ଘୁଞ୍ଚାଇଲେ ଏହି 'ଏରିଅଲ୍ ଟିଉନିଂ ସର୍କିଟ୍' ତାର ପ୍ରକୃତି ବଦଳାଏ ଏବଂ ଅନ୍ୟ ଗୋଟିଏ ଷ୍ଟେସନର ତରଙ୍ଗର ଆଗମନ ଆଶାରେ ରହିଥାଏ। ସୁନ୍ଦର ପ୍ରକ୍ରିୟା ଏହି 'ସର୍କିଟ୍'ର ଓ ଏହାକୁ ଡିଜାଇନ୍ କରିବା ଶ୍ରମସାପେକ୍ଷ। କେତେଗୁଡିଏ ଗାଣିତିକ ସୂତ୍ର ଅନୁସାରେ ଏହାକୁ ତିଆରି କରାଯାଏ।

ଅନେକ ଷ୍ଟେସନ ମଧ୍ୟ ଦୁଇଟି ଭିନ୍ନ ଭିନ୍ନ ଲମ୍ବର ବେତାର ତରଙ୍ଗ ସାହାଯ୍ୟରେ ସେମାନଙ୍କର ପ୍ରୋଗ୍ରାମ୍ ପ୍ରଚାର କରନ୍ତି। ଉଦାହରଣ ସ୍ୱରୂପ କେବଳ ମିଡିଅମ୍ ୱେଭ୍‌ରେ କଲିକତା ୩୦୦ ମିଟର୍ ଓ ୩୭୦ ମିଟର୍ ଲମ୍ବର ତରଙ୍ଗମାନଙ୍କ ସାହାଯ୍ୟରେ ତାର କାର୍ଯ୍ୟ ଚଳାଏ। ଏହାଛଡ଼ା କଲିକତାର ସର୍ଟ ୱେଭ୍‌ରେ ପ୍ରୋଗ୍ରାମ ପ୍ରେରଣର ବ୍ୟବସ୍ଥା ଅଛି। ଏପରି କ୍ଷେତ୍ରରେ ଏହି ସବୁ ବିଭିନ୍ନ ତରଙ୍ଗମାନଙ୍କର ଲମ୍ବ ଓ ଷ୍ଟେସନର ନାମ ମଧ୍ୟ ଡାଏଲ୍‌ରେ ଥାଏ। ତେଣୁ ଏରିଅଲ୍ ଟିଉନିଂ ସର୍କିଟ୍‌ର କାର୍ଯ୍ୟରେ କୌଣସି ପ୍ରତିବନ୍ଧକ ନ ଥାଏ। ଏହି ସର୍କିଟ୍ ଶ୍ରୋତାର ଇଚ୍ଛାନୁଯାୟୀ ଗୋଟିଏ ନିର୍ଦ୍ଦିଷ୍ଟ ବେତାର ତରଙ୍ଗକୁ ଧରି ଗୋଟିଏ ଆମ୍ପ୍‌ଲିଫାୟାର୍ ପାଖକୁ ପଠାଇଦିଏ। ଏହାର ନାମ 'ରେଡିଓ ଫ୍ରିକ୍ୱେନ୍‌ସି ଆମ୍ପ୍‌ଲି ଫାୟାର' ଓ ଏହା ସେହି ତରଙ୍ଗକୁ ବଢ଼ାଇ ଦିଏ।

ଆଗରୁ କୁହାଯାଇଛି ଯେ ଷ୍ଟୁଡିଓର ମାଇକ୍ରୋଫୋନ୍‌ରୁ ଆସୁଥିବା ବୈଦ୍ୟୁତିକ ତରଂଗ ଓ ଟ୍ରାନ୍‌ସ୍‌ମିଟାର୍‌ର ବହନକାରୀ ତରଙ୍ଗ, ଏରିଅଲ୍‌ରୁ ଆସିଲାବେଳେ ଏକାଠି ହୋଇ ଗତି କରନ୍ତି ଏବଂ ଏହି ମିଶ୍ରିତ ତରଙ୍ଗକୁ 'ମଡ୍ୟୁଲେଟେଡ୍' ତରଙ୍ଗ କୁହାଯାଏ। ରେଡିଓ ରିସିଭର୍‌ର ଏରିଅଲ୍ ଏହି ମଡ୍ୟୁଲେଟେଡ୍ ତରଙ୍ଗକୁ ଧରେ ଏବଂ 'ରେଡିଓ ଫ୍ରିକ୍ୱେନ୍‌ସି ଆମ୍ପ୍‌ଲିଫାୟାର' ଏହି ତରଙ୍ଗକୁ ବଢାଏ। ବର୍ତ୍ତମାନ ଆବଶ୍ୟକ ହୁଏ ଏହି ମିଶ୍ରିତ ବା ମଡ୍ୟୁଲେଟେଡ୍ ତରଙ୍ଗରୁ ମାଇକ୍ରୋଫୋନ୍‌ରୁ ଆସୁଥିବା ବୈଦ୍ୟୁତିକ ଅଡିଓ ତରଙ୍ଗକୁ ଅଲଗା କରିବାକୁ। ଏଥିଲାଗି ରେଡିଓ ରିସିଭର୍‌ରେ ଗୋଟିଏ ବ୍ୟବସ୍ଥା ଥାଏ। ଏହାକୁ ଡିଟେକ୍ଟର ବା ଡିମଡ୍ୟୁଲେଟର୍ କୁହାଯାଏ। ଏହା ମଡ୍ୟୁଲେଟେଡ୍ ତରଙ୍ଗରୁ ବୈଦ୍ୟୁତିକ ଅଡିଓ ତରଙ୍ଗକୁ ଅଲଗା କରି ଆଉ ଗୋଟିଏ ଆମ୍ପ୍‌ଲିଫାୟାର୍ ପାଖକୁ ପଠାଇଦିଏ। ଏହି ଆମ୍ପ୍‌ଲିଫାୟାର କେବଳ ବୈଦ୍ୟୁତିକ ଅଡିଓ ତରଙ୍ଗର ଶକ୍ତିକୁ ବଢ଼ାଇ ଦିଏ ବୋଲି ଏହାର ନାମକରଣ ହୋଇଛି 'ଅଡିଓ ଫ୍ରିକ୍ୱେନ୍‌ସି ଆମ୍ପ୍‌ଲିଫାୟାର'। ଏହା ଡିଟେକ୍‌ଟରରୁ ଆସୁଥିବା ବୈଦ୍ୟୁତିକ ଅଡିଓ ତରଙ୍ଗକୁ ବଢ଼ାଇ ଦେଇ ତାହାକୁ ଆଉ ଗୋଟିଏ ପାୱାର୍ ଆମ୍ପ୍‌ଲିଫାୟାର୍ ନିକଟ ପଠାଇଦିଏ। ପାୱାର୍ ଆମ୍ପ୍‌ଲିଫାୟାର୍ ବୈଦ୍ୟୁତିକ ଅଡିଓ ତରଙ୍ଗର ଶକ୍ତିକୁ ବଢ଼ାଇ ଲାଉଡ୍‌ସ୍ପିକରକୁ ଯିବାଭଳି ଶକ୍ତିଶାଳୀ କରିଦିଏ। ଲାଉଡ୍‌ସ୍ପିକରର କାର୍ଯ୍ୟ ମାଇକ୍ରୋଫୋନର କାର୍ଯ୍ୟର ଠିକ୍ ବିପରୀତ। ମାଇକ୍ରୋଫୋନ୍ ଆମର ଶବ୍ଦକୁ ବୈଦ୍ୟୁତିକ ଅଡିଓ ତରଙ୍ଗରେ ପରିଣତ କରେ ଏବଂ ଲାଉଡ୍‌ସ୍ପିକର ବୈଦ୍ୟୁତିକ ଅଡିଓ ତରଙ୍ଗକୁ ଶବ୍ଦରେ ପରିଣତ କରେ। ତେଣୁ ପରିଶେଷରେ ପାୱାର୍ ଆମ୍ପ୍‌ଲିଫାୟାରରୁ ଆସୁଥିବା ଅଡିଓ ତରଙ୍ଗ ଲାଉଡ୍‌ସ୍ପିକରକୁ ଯାଇ ଶବ୍ଦ ଆକାରରେ ଆମ୍ଭମାନଙ୍କ କର୍ଣ୍ଣଧ୍ୱନିତ ହୋଇ ଆମ୍ଭମାନଙ୍କ ମନରେ ଆଣେ ଅପୂର୍ବ ସ୍ପନ୍ଦନ। ଯେଉଁ ପାୱାର ଆମ୍ପ୍‌ଲିଫାୟାର ପାଇଁ ଯେଉଁ ଲାଉଡ୍‌ସ୍ପିକର ଉପଯୁକ୍ତ ସେ ଭଳି ଲାଉଡ୍‌ସ୍ପିକର ଦିଆଯାଏ। ନଚେତ୍ ଶବ୍ଦ ପରିଷ୍କାର ଶୁଭେ ନାହିଁ।

ଏହାଛଡ଼ା ପ୍ରତ୍ୟେକ ରେଡିଓ ରିସିଭର୍‌ରୁ ଗୋଟିଏ ତାର ଯାଇ ମାଟିତଳେ ଯୋଡ଼ା ହୋଇଥାଏ। ଏହାକୁ ଅର୍ଥ କୁହାଯାଏ। ବୈଦ୍ୟୁତିକ ତରଙ୍ଗର ପ୍ରବାହରେ ଯେପରି ବାଧାବିଘ୍ନ କିଛି ନ ଘଟେ ଏଥିଲାଗି ଏହି ଅର୍ଥ ଦିଆଯାଇଥାଏ। ରେଡିଓ ରିସିଭର୍‌ରୁ ତାର ଅଣି

ଗୋଟିଏ କୁଅ ମଧ୍ୟରେ ନେଇ ପୋତିଦେଲେ ଏହା ଖୁବ ଭଲ ଅର୍ଥିର କାର୍ଯ୍ୟ ଦିଏ । ଷ୍ଟୁଡିଓର ମାଇକ୍ରୋଫୋନ୍‌ରୁ ଆସୁଥିବା ବୈଦ୍ୟୁତିକ ଅଡ଼ିଓ ତରଙ୍ଗର ରୂପ ଓ ପ୍ରକୃତି, ଲାଉଡ୍‌ସ୍ପିକର୍‌କୁ ଆସୁଥିବା ବୈଦ୍ୟୁତିକ ଅଡ଼ିଓ ତରଙ୍ଗର ରୂପ ଓ ପ୍ରକୃତି ସଙ୍ଗେ ସମାନ ଥାଏ । ତେଣୁ ଷ୍ଟୁଡ଼ିଓରେ ମାଇକ୍ରୋଫୋନ୍ ସମ୍ମୁଖରେ ଯେଉଁ ସବୁ ଶବ୍ଦ ଉଚ୍ଚାରିତ ହୋଇଥାଏ ତାହା ଠିକ୍ ସେହିପରି ଶ୍ରୋତାର କର୍ଣ୍ଣଗୋଚର ହୁଏ ଏବଂ ଏହା ମଧ୍ୟରେ ସମୟ ବ୍ୟବଧାନ ମୋଟେ ନାହିଁ । କାରଣ ବେତାର ତରଙ୍ଗ ଏକ ସେକେଣ୍ଡରେ ୧୮୬୦୦୦ ମାଇଲ ବେଗରେ ଗତି କରେ । ଷ୍ଟୁଡିଓର ମାଇକ୍ରୋଫୋନ୍ ଓ ରେଡିଓ ରିସିଭର୍‌ର ଲାଉଡ୍‌ସ୍ପିକର ମଧ୍ୟରେ କେତେକ ଯନ୍ତ୍ର ଓ ଆୟନମଣ୍ଡଳ ମଧ୍ୟଦେଇ ବେତାର ତରଙ୍ଗ ଓ ବୈଦ୍ୟୁତିକ ତରଙ୍ଗ ଗତି କରନ୍ତି । ପଥ ମଧ୍ୟରେ ଯେପରି ତରଙ୍ଗ ତାର ଆକାର, ପ୍ରକାର, ରୂପ ଓ ପ୍ରକୃତି ପରିବର୍ତ୍ତନ ନ କରି ଲକ୍ଷଭ୍ରଷ୍ଟ ନ ହୁଏ ସେଥିଲାଗି ବିଶେଷ ଯତ୍ନ ନିଆଯାଏ । ଶହ ଶହ ବର୍ଷର ଗବେଷଣାର ଫଳ ଅଛି ଏହା ପଛରେ ।

ରେଡିଓ ରିସିଭର ଯେତେବେଳେ ପ୍ରଥମେ ଆବିଷ୍କୃତ ହୁଏ ସେତେବେଳେ ଏହାର ଧରଣ ଥିଲା ଅନ୍ୟ ପ୍ରକାର । ଆଜିକାଲି ମଧ୍ୟ ଏଭଳି ରିସିଭର ବଜାରରେ ଖୁବ୍ ଅଳ୍ପଦାମ୍‌ରେ କିଣିବାକୁ ମିଳେ । ଏହାକୁ 'କ୍ରିଷ୍ଟାଲ୍ ରିସିଭିଂ ସେଟ୍' କୁହାଯାଏ । ଏହାଦ୍ୱାରା ବୈଦ୍ୟୁତିକ ଶକ୍ତିର ବିନା ସାହାଯ୍ୟରେ ହେଡ୍‌ଫୋନ୍ କାନରେ ଦେଇ ଯେ କୌଣସି ବେତାର କେନ୍ଦ୍ରଠାରୁ ଦଶମାଇଲ ଦୂରରେ ରହି ପ୍ରୋଗ୍ରାମ୍ ଶୁଣିହୁଏ । ଏହି ଯନ୍ତ୍ରକୁ ଯତ୍ନ ସହକାରେ ତିଆରି କଲେ ଖୁବ ଭଲ ଫଳ ଦିଏ । ଏହାଛଡ଼ା ଗୋଟିଏ 'ରେଡିଓ ଭଲ୍‌ଭ୍' ସାହାଯ୍ୟରେ ହେଡ୍‌ଫୋନ୍ ଦେଇ ମଧ୍ୟ ରିସିଭିଂ ସେଟ୍ ତିଆରି କରାଯାଏ । ଆଜିକାଲି ଯେଉଁ ସବୁ 'ଲୋକାଲ୍ ସେଟ୍' ବଜାରରେ ମିଳୁଛି ସେଥିରେ 'ଏରିଆଲ୍ ଟିଉନିଂ ସର୍କିଟ'କୁ ଗୋଟିଏ ନିର୍ଦ୍ଦିଷ୍ଟ ଭାବରେ ତିଆରି କରାଯାଇଥାଏ ଏବଂ ସେଥିରେ ମିଟର୍ ନ ଥାଏ । ତେଣୁ ତାହା ଗୋଟିଏ ନିର୍ଦ୍ଦିଷ୍ଟ କେନ୍ଦ୍ରର ପ୍ରୋଗ୍ରାମକୁ ଧରେ ଏବଂ ପ୍ରଚାର କରେ ।

ମୋତେ ଅନେକ ଛୋଟ ଛୋଟ ପିଲା ପଚାରନ୍ତି "ରେଡିଓ ବଜାଇବାକୁ ହେଲେ ବୈଦ୍ୟୁତିକ ଶକ୍ତି ବା ବ୍ୟାଟେରି ଦରକାର ହୁଏ କାହିଁକି ?" ବେଶ ଭଲ ପ୍ରଶ୍ନଟିଏ । ରେଡିଓ ରିସିଭରର ବିଭିନ୍ନ ଯନ୍ତ୍ର ସବୁ ବୈଦ୍ୟୁତିକ ଶକ୍ତି ବିନା ସେମାନଙ୍କ କାର୍ଯ୍ୟ ସମ୍ପାଦନ କରି ପାରିବେ ନାହିଁ । ଯେଉଁଠି ଛୋଟ ଛୋଟ ପିଲାମାନେ ଏସବୁ ବୁଝି ନ ପାରନ୍ତି, ସେଠି ମୁଁ ବାଧ୍ୟ ହୋଇ କୁହେ "ରେଡିଓର ଖାଦ୍ୟ ହେଲା ବୈଦ୍ୟୁତିକ ଶକ୍ତି ବା ବ୍ୟାଟେରି । ତୁମେ ଯଦି ଖାଇବାକୁ ନ ପାଇବ, ତାହାହେଲେ ଦୁର୍ବଳ ହୋଇଯିବ ଓ କିଛିଦିନ ପରେ ଆଉ କୌଣସି କାମ କରି ପାରିବ ନାହିଁ । ନୁହେଁ କି ?" ମନେହୁଏ ସେମାନେ ଏହି ଉତ୍ତରରେ ସନ୍ତୁଷ୍ଟ ହୁଅନ୍ତି । ଆହୁରି ମଧ୍ୟ ବହୁତ ଲୋକେ କହନ୍ତି 'ମୋର ରେଡିଓଟା ଭଲ ନୁହେଁ— କାରଣ ସେ ରେଡ଼ିଓଟା ମୋଟେ କଟକ ଧରୁନାହିଁ" । ଅବଶ୍ୟ କଟକଠାରୁ ବହୁତ ଦୂରରେ ଥିବା ଲୋକଙ୍କର ଏପରି ଅଭିଯୋଗ । କିନ୍ତୁ ସେମାନଙ୍କର ସବୁବେଳେ ମନେରଖିବା ଉଚିତ ଯେ କଟକ ଷ୍ଟେସନ ଏକ କିଲୋଓ୍ୟାଟ୍ ଶକ୍ତି ସମ୍ପନ୍ନ ଏବଂ ଦୁର୍ବଳ । ଏହା ସମଗ୍ର ଓଡ଼ିଶାକୁ ମଧ୍ୟ ଖବର ଯୋଗାଇ ପାରେ ନାହିଁ । ଏପରି କ୍ଷେତ୍ରରେ ରିସିଭର୍‌କୁ ବୃଥା ଦୋଷାରୋପ କରି ମନରେ ଅଶାନ୍ତି ଆଣିବା ଠିକ୍ ନୁହେ । ଭାରତ ସରକାର ନିକଟ ଭବିଷ୍ୟତରେ କଟକ ବେତାର କେନ୍ଦ୍ରକୁ ଦଶ କିଲୋଓ୍ୟାଟ୍ ଶକ୍ତିସମ୍ପନ୍ନ କରୁଛନ୍ତି । ଏହା ଦଶ କିଲୋଓ୍ୟାଟ୍ ଶକ୍ତି ସମ୍ପନ୍ନ ହୋଇଗଲେ ସମଗ୍ର ଓଡ଼ିଶାକୁ ଖବର ଯୋଗାଇ ପାରିବ ।

ଭାରତରେ ଅନେକ ଦେଶୀ ଓ ବିଦେଶୀ କମ୍ପାନୀ ରେଡିଓ ତିଆରି କରୁଛନ୍ତି । ଏମାନଙ୍କ ମଧ୍ୟରୁ ଫିଲିପ୍‌ସ୍, ଏଚ୍. ଏମ୍. ଭି, ଜି. ଇ. ସି, ମର୍ଫି, ଇକ୍‌କୋ, ମୁଲାର୍ଡ, ଆଇ. ଆର୍. ସି ପ୍ରଭୃତି ଉଲ୍ଲେଖଯୋଗ୍ୟ । ପାଞ୍ଚବର୍ଷ ପୂର୍ବେ ରେଡିଓ ରିସିଭର୍‌ର ମୂଲ୍ୟ ଯାହା ଥିଲା, ବର୍ତ୍ତମାନ ତାହା ଅନେକ କମିଯାଇଛି । ତଥାପି ଭାରତର ଅର୍ଥନୈତିକ ଅବସ୍ଥା ପ୍ରତି ଦୃଷ୍ଟିଦେଲେ ସ୍ପଷ୍ଟ ଦେଖାଯାଏ ଯେ ସାଧାରଣଙ୍କ ପକ୍ଷେ ରେଡିଓ ସେଟ୍ କିଣିବା କଷ୍ଟ । 'ଅଲ୍ ଇଣ୍ଡିଆ ରେଡିଓ'ର ଇଂଜିନିଅର୍‌ମାନେ ତାଙ୍କର

ଗବେଷଣା ଫଳରେ ଟ ୧୦୦୯ ମୂଲ୍ୟର ଗୋଟିଏ ସୁପର୍ ହେଟ୍ ରେଡ଼ିଓ ସେଟ୍ ତିଆରି କରିପାରିଛନ୍ତି । ସୁପର୍ ହେଟ୍ ସେଟ୍ ଅନ୍ୟାନ୍ୟ ସାଧାରଣ ରିସିଭର୍ ଅପେକ୍ଷା ଭଲ ଫଳ ଦିଏ । ଏହାର ବିସ୍ତୃତ ବିବରଣୀ ଏଠାରେ ଦେବା ସମ୍ଭବ ନୁହେଁ । ସେହି ରେଡ଼ିଓ ସେଟ୍‌ଟି ଭାରତର ସବୁ ଷ୍ଟେସନ୍ ଧରିପାରୁଛି । କିନ୍ତୁ ଏହା ଏପର୍ଯ୍ୟନ୍ତ ବିକ୍ରି ହେବା ଉଦ୍ଦେଶ୍ୟରେ ବେଶୀ ସଂଖ୍ୟାରେ ତିଆରି ହୋଇନାହିଁ । ନିକଟଭବିଷ୍ୟତରେ ଏହି ସମ୍ପର୍କରେ କିଛି ଆଶା କରାଯାଇପାରେ । ଜାପାନ୍‌ରେ ଛୋଟ ଛୋଟ ପିଲାମାନେ ମଧ୍ୟ ରେଡ଼ିଓ ସେଟ୍ ତିଆରି କରି ଜାଣନ୍ତି । ଥରେ ଜାପାନ୍‌ର ଗୋଟିଏ ବାର ବର୍ଷର ପିଲା ତାର କୁକୁର ଖେଳନା ମଧ୍ୟରେ ଗୋଟିଏ ରେଡ଼ିଓ ସେଟ୍‌ର ବିଭିନ୍ନ ଯନ୍ତ୍ରପାତି ରଖି ତିଆରି କରିଥିଲା । ଏହି ଖେଳନା ରେଡ଼ିଓଟି ଖୁବ୍ ଚମତ୍କାର ହୋଇଥିଲା । କୁକୁରର କାନ ମୋଡ଼ିଦେଲେ ଗୋଟିଏ ଷ୍ଟେସନ୍, ଆଖି ଚିପିଦେଲେ ଅନ୍ୟ ଗୋଟିଏ ଷ୍ଟେସନ୍ ଓ ଲାଙ୍ଗୁଡ଼ ମୋଡ଼ିଦେଲେ ଆଉ ଗୋଟିଏ ଷ୍ଟେସନ୍‌ରୁ ପ୍ରୋଗ୍ରାମ୍ ଆସୁଥିଲା । ଏହାର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ଦ୍ୱାରା ବିଭିନ୍ନ ଷ୍ଟେସନ୍‌ର ପ୍ରୋଗ୍ରାମ ଧରାଯାଇପାରୁଥିଲା । ଯୁଦ୍ଧ ସମୟରେ ମଧ୍ୟ ଜର୍ମାନୀ ଗୋଟିଏ 'ଓ୍ୟାଚ' ରେଡ଼ିଓ ଆବିଷ୍କାର କରିଥିଲା । ଭାରତରେ ଯଦି ଖୁବ୍ ଶସ୍ତା ଦରରେ ରେଡ଼ିଓ ରିସିଭର ମିଳିବ, ତେବେ ପ୍ରତି ଗାଁରେ ରେଡ଼ିଓ ସବୁର ବ୍ୟବହାର ହେବ ଏବଂ ଆମ ଦେଶର ପିଲାମାନେ ମଧ୍ୟ ଜାପାନର ପିଲାଙ୍କ ଭଳି ଅଦ୍ଭୁତ ଧରଣର ଖେଳନା ରେଡ଼ିଓ ତିଆରି କରିପାରିବେ ।

ରାଜସ୍ଥାନର ପିଲାନୀଠାରେ ରେଡ଼ିଓ ଗବେଷଣା ଲାଗି ଗୋଟିଏ ଅନୁଷ୍ଠାନ ଖୋଲା ଯାଉଛି । ଏହାର ନାମ 'ସେଣ୍ଟ୍ରାଲ୍ ଇଲେକ୍‌ଟ୍ରୋନିକ ଇଂଜିନିଅରିଂ ରିସର୍ଚ୍ଚ ଇନ୍‌ଷ୍ଟିଚିଉଟ୍ ଏବଂ ଏହା ଭାରତର 'କାଉନ୍‌ସିଲ୍ ଅଫ୍ ସାଏନ୍‌ଟିଫିକ୍ ଆଣ୍ଡ୍ ଇଣ୍ଡଷ୍ଟ୍ରିୟାଲ୍ ରିସର୍ଚ୍ଚ'ଙ୍କ ଅଧୀନରେ ରହିବ । ବାଙ୍ଗାଲୋରରେ ମଧ୍ୟ 'ଭାରତ ଇଲେକ୍‌ଟ୍ରୋନିକ୍ସ ଲିମିଟେଡ୍' ନାମକ ଗୋଟିଏ ରେଡ଼ିଓ ଯନ୍ତ୍ରପାତି କାରଖାନା ଖୋଲାଯାଉଛି । ଖୁବ୍ ଶୀଘ୍ର ଏହି ଦୁଇଟି ଅନୁଷ୍ଠାନର କାର୍ଯ୍ୟ ଆରମ୍ଭ ହେବ । ଆଶା କରାଯାଏ ଭାରତର ଦେଶରକ୍ଷା ବିଭାଗ, ଅଲ୍ ଇଣ୍ଡିଆ ରେଡ଼ିଓ, ମିଟିଓରୋଲୋଜି ବିଭାଗ ଓ ସିଭିଲ୍ ଆଭିଏସନ୍‌ର କର୍ତ୍ତୃପକ୍ଷମାନେ ଏହି ଦୁଇଟି ଅନୁଷ୍ଠାନରୁ ବହୁତ ଉପକାର ଲାଭ କରିବେ । ଭାରତରେ ରେଡ଼ିଓ ଶିଳ୍ପର ଉତ୍ତରୋତ୍ତର ଉନ୍ନତି ହେବ । ସେଦିନ ଖୁବ ନିକଟରେ ।

—o—

# ହିସାବ-ପଞ୍ଜିକା

୧ । ଯୁକ୍ତରାଷ୍ଟ୍ର ଆମେରିକା ପ୍ରତି ମାସରେ ପରମାଣୁ ଗବେଷଣାରେ ପ୍ରାୟ ୫୫ କୋଟି ଟଙ୍କା ଖର୍ଚ୍ଚ କରୁଛି ଏବଂ ବାର୍ଷିକ ୪୭୮ କୋଟି ଟଙ୍କା କଳକାରଖାନା ନିର୍ମାଣ ଦିଗରେ ବ୍ୟୟ କରୁଛି । ବର୍ତ୍ତମାନର ପରିକଳ୍ପନା କାର୍ଯ୍ୟକାରୀ ହୋଇ ସାରିଲାବେଳକୁ ସର୍ବମୋଟ ୪୦୬୩ କୋଟି ଟଙ୍କା ଖର୍ଚ୍ଚ ସରିଥିବ ।

୨ । ୨୦୦ଟି ବଡ଼ ସହରର ହିସାବରୁ ଜଣାଯାଉଛି ଯେ ଗତବର୍ଷଠାରୁ ୧୮ ବର୍ଷରୁ ଊର୍ଦ୍ଧ୍ୱ ଅପରାଧୀଙ୍କ ସଂଖ୍ୟା ଶତକଡ଼ା ୧·୯ ହାରରେ ବୃଦ୍ଧି ପାଇଛି । ୧୮ ବା ତାଠାରୁ କମ୍ ବୟସର ଅପରାଧୀ ସଂଖ୍ୟା ଶତକଡ଼ା ୭·୯ ବଢ଼ିଛି । ୧୯୫୨-୫୩ ମଧ୍ୟରେ ଯୁବକ ଅପରାଧୀ ସଂଖ୍ୟା ଦ୍ୱିଗୁଣିତ ହୋଇଛି । ହତ୍ୟା, ହରଣ, ଡକାୟତି ଅତମାତାରେ ବଢ଼ିଛି ।

୩ । ମିଳିତ ଜାତିସଂଘର ଜନବସତି ବିଭାଗର ଗୋଟିଏ ହିସାବରୁ ଜଣାଯାଇଛି ଯେ ପୃଥିବୀରେ ଦୈନିକ ୮୫ ହଜାର ଲୋକ ବୃଦ୍ଧି ହେଉଛନ୍ତି । ଭାରତ, ସିଂହଳ, ଇଜିପ୍ଟ, ଇସ୍ରାଏଲ୍, ପୋଲାଣ୍ଡ, ମେକ୍‌ସିକୋ ଓ ଗ୍ରୀନ୍‌ଲାଣ୍ଡ ପ୍ରଭୃତି ଦେଶମାନଙ୍କରେ ପ୍ରତିବର୍ଷ ୧୦୦୦ ପିଚ୍ଛା ୪୦ ବା ତଦୂର୍ଦ୍ଧ୍ୱ ଲୋକସଂଖ୍ୟା ବୃଦ୍ଧି ପାଉଛି, ଏଗୁଡ଼ିକ ସର୍ବୋଚ୍ଚ ଜନସଂଖ୍ୟା ବୃଦ୍ଧି ହେଉଥିବା ଦେଶ ।

—o—



# ଓଡ଼ିଶା ଖବର

ତା ୧ । ୯— ଆଙ୍ଗ୍ଲୋଇଣ୍ଡିୟାନମାନଙ୍କ ଶିକ୍ଷା ପାଇଁ ଓଡ଼ିଶା ସରକାର ଗୋଟିଏ ବୋର୍ଡ ଗଠନ କଲେ ।

ତା ୭—ଓଡ଼ିଶାର କୃଷି ମହାବିଦ୍ୟାଳୟ ୧୯୫୭-୫୮ ବେଳକୁ ପୂର୍ଣ୍ଣାଙ୍ଗପ୍ରାପ୍ତ ହେବ ବୋଲି ଜଣାଯାଇଛି ।

ତା ୮—ଓଡ଼ିଶା ଅସେମ୍ବ୍ଲିରେ ଓଡ଼ିଆ ସରକାରି ଭାଷା ରୂପେ ଗୃହୀତ ହେଲା ।

# ଭାରତ ଖବର

ତା ୪ । ୯—ଜଣା ଯାଉଛି ଯେ ଭାରତରେ ବମ୍ବେଠାରେ ୧୯୫୬ ମସିହାରେ ପ୍ରଥମ ଟେଲିଭିଜନ କେନ୍ଦ୍ର ସ୍ଥାପିତ ହେବ ।

ତା ୫— ଶ୍ରୀ ଶ୍ୟାମନନ୍ଦନ ମିଶ୍ର (ବିହାର) ଭାରତର ନୂଆ ସହକାରୀ ମନ୍ତ୍ରୀ ନିଯୁକ୍ତ ହେଲେ ।

ତା ୭—ଆସନ୍ତା ଜାନୁୟାରୀ ୨ ତାରିଖରେ ବରୋଦା ଠାରେ ଭାରତୀୟ ବିଜ୍ଞାନ କଂଗ୍ରେସର ୪୨ ତମ ଅଧିବେଶନ ହେବ ଓ ଏଥିରେ ବିଦେଶର ବହୁ ବିଶିଷ୍ଟ ବୈଜ୍ଞାନିକ ଯୋଗ ଦେବେ ।

ତା ୮—ଭାରତର ଶ୍ରମମନ୍ତ୍ରୀ ଶ୍ରୀ ଭି. ଭି. ଗିରି ଇସ୍ତଫା ଦେବାରୁ ଶ୍ରୀ ଖଣ୍ଡୁଭାଇ ଦେଶାଇ ନୂଆ ଶ୍ରମମନ୍ତ୍ରୀ ନିଯୁକ୍ତ ହେଲେ ।

ତା ୯— ଆଗାମୀ ଅକ୍ଟୋବର ଦୁଇ ତାରିଖଠାରୁ ଭାରତରେ 'ବେତାର ମାସ' ପାଳିତ ହେବ । ଏତଦୁପଲକ୍ଷେ ଗୋଟିଏ ନୂତନ ଡାକ ଟିକଟ ପ୍ରକାଶ ପାଇବାର ସମ୍ଭାବନା ଅଛି ।

ତା ୧୫— ଶ୍ରୀଯୁକ୍ତ ନେହେରୁ ଆଗାମୀ ଅକ୍ଟୋବର ମାସର ମଧ୍ୟ ଭାଗରେ ଚୀନ ପରିଦର୍ଶନରେ ଯିବେ ବୋଲି ଜଣାଯାଇଛି ।

—ଭାରତର ସବୁ ରେଲବାଇରୁ ପ୍ରଥମ ଶ୍ରେଣୀ ବ୍ୟବସ୍ଥା ଉଠିଯିବ ବୋଲି ପ୍ରକାଶ ।

—ଯୁଗୋସ୍ଲାଭିଆର ପ୍ରେସିଡେଣ୍ଟ ଜୋସେଫ ବ୍ରୋଜ୍ ଟିଟୋ ଭାରତ ପରିଦର୍ଶନରେ ଆସନ୍ତା ଶୀତ ଋତୁ ଅନ୍ତରୁ ଆସିବା ସମ୍ଭାବନା ଅଛି ।

ତା ୨୨— ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ଲଣ୍ଡନରେ ଭାରତର ହାଇକମିଶନର ନିଯୁକ୍ତ ହେଲେ । ଉକ୍ତ ପଦରେ ଥିବା ଶ୍ରୀ ବି. ଜି. ଖେର ଇସ୍ତଫା ଦେଇଛନ୍ତି ।

—ଇଣ୍ଡୋନେସିଆର ପ୍ରଧାନ ମନ୍ତ୍ରୀ ଅଲି ଶାସ୍ତ୍ର-ମିଜୋଜୋଙ୍କ ଭାରତ ଆଗମନ ।

ତା ୨୫—ଶ୍ରୀଯୁକ୍ତ ନିତ୍ୟାନନ୍ଦ କାନୁନଗୋ ଭାରତର ଶିଳ୍ପ-ବାଣିଜ୍ୟର ଉପମନ୍ତ୍ରୀ ନିଯୁକ୍ତ ହେଲେ । ତାଙ୍କ ଉପରେ ହସ୍ତଶିଳ୍ପ ବିଭାଗର ପୂରାପୂରି ଦାୟିତ୍ୱ ଦିଆଁ-ଯାଇଛି ।

# ବିଦେଶ ଖବର

ତା ୯—କମ୍ୟୁନିଷ୍ଟ ଚୀନ୍‌ର ମୂଳ ଭୂଖଣ୍ଡ ଉପରେ ଫର୍ମୋଜା ସରକାରଙ୍କ ଆକ୍ରମଣ !

ତା ୯—ଆଲ୍‌ଜିରିଆରେ ଭୀଷଣ ଭୂମିକମ୍ପ ଯୋଗୁ ୧୧୦୦ ଲୋକ ମୃତ୍ୟୁ ମୁଖରେ ପଡ଼ିଲେ ।

ତା ୧୪—ଆସନ୍ତା ମାସରେ ନେହେରୁଙ୍କ ସହ ପେକିଂରେ ରୁଷିଆର ପ୍ରଧାନ ମନ୍ତ୍ରୀ ମାଲେନ୍‌କୋଭଙ୍କର ସାକ୍ଷାତ୍ ହେବାର ସମ୍ଭାବନା ଅଛି ।

—ଭାରତର ପ୍ରତି ରେଲବାଇରେ ତୃତୀୟ ଶ୍ରେଣୀରେ ଦୂର ଯାତ୍ରୀ ମାନଙ୍କ ନିମନ୍ତେ ଶୋଇବା ପାଇଁ ସ୍ଥାନ ଯୋଗାଇ ଦିଆଯିବ ।

ତା ୨୨—ନେଦରଲାଣ୍ଡର ପ୍ରତିନିଧି ମିଃ ଭ୍ୟାନ କ୍ଲେଫେନ୍‌ସ ଜାତିସଂଘର ନୂତନ ସଭାପତି ନିର୍ବାଚିତ ହେଲେ ।

## ଦରକାରବେଳେ କର୍ମରେ ଆସିବ

୧ । ଆମେରିକା ଯୁକ୍ତରାଷ୍ଟ୍ରସ୍ଥ ଭାରତର କନ୍‌ସଲ ଜେନେରାଲ ମିଃ ଆର୍ଥର ଏସ୍. ଲାଲ୍ ଜାତି-ସଙ୍ଘରେ ଭାରତର ସ୍ଥାୟୀ ପ୍ରତିନିଧି ନିଯୁକ୍ତ ହେଲେ । ଉକ୍ତ ପଦରେ ଥିବା ମିଃ ରାମେଶ୍ୱର ଦୟାଲ ଯୁଗୋସ୍ଲୋଭିଆରେ ଭାରତର ରାଷ୍ଟ୍ରଦୂତ ନିଯୁକ୍ତ ହେଲେ ।

୨ । ଭାରତର ଜାତୀୟ କଂଗ୍ରେସର ୬୦ତମ ଅଧିବେଶନ ଆଗାମୀ ଜାନୁଆରୀ ମାସରେ ମାନ୍ଦ୍ରାଜ ସହରର ୧୪ ମାଇଲ୍ ଉତ୍ତରରେ ଥିବା ଆବାଦୀଠାରେ ବସିବ ବୋଲି ଜଣା ଯାଇଛି ।

୩ । ଅନ୍ଧ୍ର ପ୍ରଦେଶର ତିରୁପତିରେ ଗୋଟିଏ ନୂଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ଏହାର ନାମ 'ଭେଙ୍କଟେଶ୍ୱର ବିଶ୍ୱବିଦ୍ୟାଳୟ' ।

୪ । ୧୯୫୪ର କଳିଙ୍ଗ ପୁରସ୍କାର—

ଶ୍ରୀ ବିଜୟାନନ୍ଦ ପଟ୍ଟନାୟକଙ୍କ ପ୍ରଦତ୍ତ କଳିଙ୍ଗ ପୁରସ୍କାର (୧ ହଜାର ପାଉଣ୍ଡ=୧୩୨୮୭ ଟଙ୍କା) ଚଳିତ ବର୍ଷପାଇଁ ନିଉୟର୍କ ଟାଇମ୍‌ସ ପତ୍ରିକାର ବିଜ୍ଞାନ ବିଭାଗ ସମ୍ପାଦକ ମି. ଓ୍ୱାଲ୍‌ଡମାର କେମ୍ପଫ୍‌ଙ୍କୁ ଦିଆଯିବ ବୋଲି UNESCO ଘୋଷଣା କରିଛନ୍ତି । ଜାନୁୟାରୀରେ ବସୁଥିବା ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନରେ ଯୋଗ ଦେବାପାଇଁ ପୁରସ୍କାର ବିଜେତାଙ୍କୁ ନିମନ୍ତ୍ରଣ କରା ଯାଇଛି । ସେ ପ୍ରାୟ ମାସେକାଳ ଭାରତର ବିଭିନ୍ନ ସ୍ଥାନରେ ଭ୍ରମଣ କରି ବିଜ୍ଞାନ ସମ୍ବନ୍ଧରେ ବକ୍ତୃତା ଓ ଆଲୋଚନା କରିବେ । ଏଠାରେ ସ୍ମରଣ କରାଯାଇପାରେ ଯେ ଏଥିପୂର୍ବରୁ ପାରସ୍ୟର ଲୁଇ. ଡି ବ୍ରଗଲି ଓ ଲଣ୍ଡନର ଡଃ ଜୁଲିଏନ ହକ୍‌ସଲି ଏହି ପୁରସ୍କାର ଲାଭ କରିଛନ୍ତି ।

୫ । ଭାରତୀୟ ସୈନ୍ୟ ବାହିନୀର ପରେଡ଼ ସମୟରେ ଇଂରେଜୀ ଭାଷାରେ ଯେଉଁ ଆଦେଶ ଦିଆ ଯାଉଥିଲା, ତାହା ଲୋପ କରାଯାଇ ଏଣିକି ହିନ୍ଦିରେ ଆଦେଶ ଦିଆଯିବ ।

୬ । ରେଲ ଇଞ୍ଜିନରେ ମୋଟରେ ୫୩୩୫ ଟି ଅଂଶ ବା ପାର୍ଟ ଥାଏ ।

୭ । ଏସିଆର ଉଚ୍ଚତମ ୧୩ ମହଲା ବିଶିଷ୍ଟ କୋଠାଘର ପଶ୍ଚିମବଙ୍ଗର ସପ୍ଲି ମେଣ୍ଟାରୀ ସେକ୍ରେଟେରିଏଟ ନିର୍ମାଣରେ ୮୪ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଛି । ଏହି କୋଠାରେ ୬୦୦ ଟି ଦ୍ୱାର, ୧୮୦୦ ଟି ଝରକା, ୨୫୦୦ ଟି ବିଦ୍ୟୁତ ଆଲୋକ ଏବଂ ୧୭୦୦ ଟି ବିଦ୍ୟୁତ ପଙ୍ଖା ଅଛି ।

୮ । ଭାରତର ଡାକ ବିଭାଗୀୟ ଶତବାର୍ଷିକୀ ଉପଲକ୍ଷେ ୧୯୪୭ ମସିହା ପୂର୍ବର ଡାକଟିକଟ, ସର୍ଭିସ-ଟିକଟ, ଲଫାପା, ପୋଷ୍ଟକାର୍ଡ ଓ ସମସ୍ତ ଡାକଦ୍ରବ୍ୟ ରଦ୍ଦ କରାଯିବ । ଏହା ଆଗାମୀ ଅକ୍ଟୋବର ୧ ତାରିଖଠାରୁ କାର୍ଯ୍ୟକାରୀ ହେବ ଏବଂ କାର୍ଯ୍ୟକାରୀ ହେବାର ୩ ମାସ ମଧ୍ୟରେ ପୂର୍ବ ଟିକଟ ଗୁଡ଼ିକ ଭଲ ଅବସ୍ଥାରେ ଥିଲେ ଡାକଘରେ ବଦଳା ଯାଇ ପାରିବ ।

୯ । ଭାରତରେ ହୀରା ଖଣିର କାର୍ଯ୍ୟ ପାଇଁ ରୁଷିଆ ୩ ଜଣ ବିଶେଷଜ୍ଞ ପଠାଇଛି । ଏମାନେ ଖନନ କାର୍ଯ୍ୟ ପାଇଁ ଯେପରି ସୁବିଧା ହେବ ସେ ସବୁର ଯୋଜନା ଦେବେ । ରୁଷିଆ ସରକାର ଏହି ବିଶେଷଜ୍ଞମାନଙ୍କର ଭାରତରେ ରହିବା ଓ ଯିବା ଆସିବାର ସମସ୍ତ ଖର୍ଚ୍ଚ ବହନ କରିବେ । ଆଉ ଖନନ କାର୍ଯ୍ୟ ପାଇଁ ଯେଉଁ ଯନ୍ତ୍ର ଆବଶ୍ୟକ ହେବ ତାହା ସୁବିଧାରେ ଯୋଗାଇ ଦେବେ ଏବଂ ଯନ୍ତ୍ର-ପାତିର ବ୍ୟବହାର ନିମନ୍ତେ ଭାରତୀୟ ମାନଙ୍କୁ ଶିକ୍ଷା-ଦେବାର ସୁବିଧା କରିବେ ।

ବିନ୍ଧ୍ୟ ପ୍ରଦେଶସ୍ଥ ପାନ୍ନା ଅଞ୍ଚଳରେ ଏହି ମାପଚୁପ କାମ ଆରମ୍ଭ ହେଲଣି ଏବଂ ଏଠାରେ ପ୍ରାୟ ୧୬୫କୋଟି ଟଙ୍କାର ହୀରା ଥିବାର ଅନୁମାନ କରାଯାଉଛି ।

## ବିଶେଷ ବିବାହ ଆଇନ
### Special Marriages Bill

ଏହି ଆଇନଟି ୨୭ ମାସ କାଳ ପାର୍ଲାମେଣ୍ଟ ଓ ଲୋକମତ ମଧ୍ୟରେ ଠେଲା ପେଲା ଖାଇ ଖାଇ ଏବେ ପାର୍ଲାମେଣ୍ଟର ଦୁଇ ସଭାର ମଞ୍ଜୁର ପାଇଛି । କେବଳ ରାଷ୍ଟ୍ରପତିଙ୍କ ମଞ୍ଜୁର ମିଳିଲେ ଏହା ଆଇନରେ ପରିଣତ ହେବ ।

ଭାରତରେ ଏ ପର୍ଯ୍ୟନ୍ତ ପ୍ରଚଳିତ ଥିବା ବିବାହ ପଦ୍ଧତିରେ କେତେକ ପରିବର୍ତ୍ତନ କରାଯାଇ ଏହି ଆଇନ

ତଅର କରାଯାଇଛି । ଅବଶ୍ୟ ଏ ଆଇନ ଗୃହୀତ ହେଲେ ଯେ ପୂର୍ବ ସଙ୍ଗତ ବେଆଇନ ହୋଇଯିବ ତା ନୁହେଁ । ଯେଉଁମାନେ ପୂର୍ବ ଧର୍ମସମ୍ମତ ରୀତିରେ ବିବାହ କରିବାକୁ ଇଚ୍ଛା କରିବେ, ସେମାନେ ତା କରି ପାରିବେ । ଏ ନୂଆ ଆଇନରେ ଅଛି ଯେ ଦୁଇ ଭିନ୍ନ ଧର୍ମର ପୁରୁଷ ଓ ସ୍ତ୍ରୀ ବିବାହ କରି ପାରିବେ ଅଥଚ ସେମାନଙ୍କ ଧର୍ମ ହରାଇବେ ନାହିଁ । ପୁଣି ଏକା ଧର୍ମର ଭିନ୍ନ ଜାତି ମଧ୍ୟରେ ବିବାହ ମଧ୍ୟ ହୋଇ ପାରିବ । ଆଉ ଗୋଟିଏ ବୈପ୍ଳବିକ ଧାରା ହେଉଛି ବିବାହ ବିଚ୍ଛେଦର ପ୍ରଚଳନ । ପୁରୁଷ ଓ ସ୍ତ୍ରୀ ପରସ୍ପର ରାଜିନାମାରେ ବିବାହ ବିଚ୍ଛେଦ କରି ପାରିବେ । ୨୧ ବର୍ଷର ଯୁବକ ଓ ୧୮ ବର୍ଷର ଯୁବତୀ ପିତାମାତାଙ୍କ ସମ୍ମତି ନ ପାଇଲେ ସୁଦ୍ଧା ବିବାହ କରି ପାରିବେ ଏବଂ ତାହା ଆଇନତଃ ଅସିଦ୍ଧ ହେବ ନାହିଁ । ଏହି ନୂତନ ଆଇନର ସୁବିଧା ନେଇ ସାମୟିକ ଉତ୍ତେଜନାର ବଶବର୍ତ୍ତୀ ହୋଇ କେତେ ଯୁବକ ଯୁବତୀ ବିବାହ କରିବେ ଏବଂ ପୁଣି ବିବାହ ଭାଙ୍ଗିବେ ଏଇ ଆଶଙ୍କାରେ ବହୁ ବ୍ୟକ୍ତି ଏହାକୁ ସମାଲୋଚନା କରିଥିଲେ । କିନ୍ତୁ ଯୁଗର ରୀତି ତା ବାଟ ଧରିଲା । ଦେଖାଯାଉ ଏହାଦ୍ୱାରା ଭାରତର ସାମାଜିକ ଜୀବନ କିପରି ପ୍ରଭାବିତ ହେଉଛି ।

—o—

## ବୁଦ୍ଧିପରୀକ୍ଷା ଉତ୍ତର

୧ । ହାତ

୨ । ଅଧାପାଠୁଆ ହୁଅନ୍ତି

୩ । (କ) ୪ (ଖ) ୨୪ (ଗ) ୧

୪ । (କ) କଜଳପାତି (ଖ) ମାଛରଙ୍କା (ଗ) କୁମ୍ଭାଟୁଆ ।

୫ । (କ) କଖାରୁଫୁଲ (ଖ) ବାଲିଛତୁ (ଗ) ଚିନାବାଦାମ (ଘ) ତାଜମହଲ ।




୧ । ଶ୍ରୀ ନିତାଇଦାସ ମୁଖାର୍ଜୀ ବି.ଏ. (ଅନର୍ସ), କଟକ

—ଆପଣଙ୍କ ଦୀର୍ଘ ଚିଠିଟି ପଢ଼ିଲି । ଧନ୍ୟବାଦ । ଆପଣ **Philatelic Association** ସଙ୍ଗେ 'ସଂସାର'ର କି ସମ୍ପର୍କ ପଚାରିଛନ୍ତି । 'ସଂସାର'ର ଏହାସଙ୍ଗେ କୌଣସି ସମ୍ପର୍କ ନାହିଁ । ଏ ବିଷୟରେ କୌଣସି ବିବରଣୀ ଜାଣିବାକୁ ଇଚ୍ଛୁକ ଥିବା ବ୍ୟକ୍ତି ସିଧା ପ୍ରବନ୍ଧ ଲେଖକଙ୍କୁ ଚିଠି ଲେଖି ପାରନ୍ତି ବୋଲି ଆମେ ଏକାଧିକବାର ସୂଚାଇଛୁ । ଗତ ସଂଖ୍ୟା ୨୨ ପୃଷ୍ଠାର ୧୮ ନଂ ପ୍ରଶ୍ନକର୍ତ୍ତାଙ୍କ ଉତ୍ତରରେ ଲେଖକଙ୍କ ନାମ ଓ ଠିକଣା ମଧ୍ୟ ଦେଇଛୁ । ଦେଖିବେ ।

ଡାକଟିକଟ ସଂଗ୍ରହ ଗୋଟିଏ ନିର୍ଦ୍ଦୋଷ **hobby** —ଏ ସମ୍ବନ୍ଧୀୟ ବିବରଣୀ ପ୍ରକାଶ ପାଇଁ ଓଡ଼ିଶାରେ ଅନ୍ୟ କୌଣସି ପତ୍ରିକା ନାହିଁ —ତେଣୁ ଆମେ ଏହାକୁ ସଂସାରରେ ଧାରାବାହିକ ସ୍ଥାନ ଦେଉଛୁ । ଅନ୍ୟାନ୍ୟ **hobby** ବିଷୟରେ ଉପଯୁକ୍ତ ଲେଖା ପାଇଲେ ନିଶ୍ଚୟ ପ୍ରକାଶ କରିବୁ । ଥରେ ଅଧେ ଫଟୋଗ୍ରାଫି ବିଷୟ ଦେଇଥିଲୁ । ଏଥିଲାଗି ସ୍ୱତନ୍ତ୍ର ବିଭାଗ ଖୋଲିବା ବର୍ତ୍ତମାନ ସମ୍ଭବ ହେଉନାହିଁ ।

୨ । ଶ୍ରୀ ଲକ୍ଷ୍ମୀକିଶୋର ସାହୁ, ଗୌଡ଼ମୀ

—ସିନେମାରେ ଧୂମ୍ରପାନ ଓ ଅବର୍ଜନା ବିଷୟରେ ଆପଣ ଯାହା ଲେଖିଛନ୍ତି, ଆମେ ମଧ୍ୟ ସେଥିରେ ଏକମତ । ଏହା ଯେତେଶୀଘ୍ର ବନ୍ଦ ହୁଏ ଭଲ । ସଂପୃକ୍ତ କର୍ତ୍ତାମାନେ ଏ ଦିଗରେ ଦୃଷ୍ଟି ଦେଉ ନ ଥିବା ବାସ୍ତବିକ ଦୁଃଖର କଥା ।

Printed & Published by Sri R. K. Nanda B. A. D. Ed. at the Parijat Press, Telengabazar, Cuttack-1—1954.

